ବିଜ୍ଞାନ-ଆବିଷ୍କର୍ତ୍ତା ସିରିଜ୍



ବୈଜ୍ଞାନିକ

# ଜଗଦୀଶଚନ୍ଦ୍ର ବୋଷ





ବୈଜ୍ଞାନିକ

# ଜଗଦୀଶଚନ୍ଦ୍ର ବୋଷ

ଶ୍ରୀବନାରାୟଣ ମିଶ୍ର, ବି. ଏ.

ଜନଶକ୍ତି ପୁସ୍ତକାଳୟ

ନୂତନ ମୁଦ୍ରଣ, ମେ' : ୧୯୮୭



ମୂଲ୍ୟ—ଟ ୨-୦୦ ମାତ୍ର

---

ଜନଶକ୍ତି ପୁସ୍ତକାଳୟ, ବନୋଦବହାରୀ, କଟକ-୨ଙ୍କ ତରଫରୁ
ଏନ୍. ଏଲ୍. ଗୁପ୍ତଙ୍କ ଦ୍ୱାରା ପ୍ରକାଶିତ ଏବଂ ଶ୍ରୀ ରବୀନ୍ଦ୍ରନାଥ
ପଣ୍ଡାଙ୍କ ଦ୍ୱାରା ବାସନ୍ତୀଦୁର୍ଗା ପ୍ରିଣ୍ଟର୍ସ, ଖଟବିନ୍‌ସାହି,
କଟକ-୮ରେ ମୁଦ୍ରିତ ।

ଆଜକୁ ପ୍ରାୟ ଗୃଶ ଶତ ବର୍ଷ ପୂର୍ବେ ପାଶ୍ଚାତ୍ୟ ମହାଦେଶରେ ବିଜ୍ଞାନର ଚର୍ଚ୍ଚା ଆରମ୍ଭ ହୋଇଥିଲା । ଏହାର ବହୁ ପୂର୍ବରୁ ଭାରତବର୍ଷରେ ବିଜ୍ଞାନ ଚର୍ଚ୍ଚାର ଆରମ୍ଭ ହୋଇ ଯଥେଷ୍ଟ ଉନ୍ନତି ସାଧିତ ହୋଇ ପାରିଥିଲା । ଭାରତୀୟମାନେ ଚିରକାଳ ଧାର୍ମିକ । ଧର୍ମାଲୋଚନା ଓ ଦର୍ଶନ ଶାସ୍ତ୍ରରେ ଭାରତବାସୀ ନିମଗ୍ନ ରହିବା ଫଳରେ ବିଜ୍ଞାନ ସାଧନା ସମ୍ଭବ ହେଲ ନାହିଁ । ଏହା ମଧ୍ୟଯୁଗର ପ୍ରଥା । ବିଜ୍ଞାନର ଉତ୍କର୍ଷ ଫଳରେ ଇଉରୋପବାସୀଙ୍କର ଜୀବନ-ଧାରାରେ ଅସମ୍ଭବ ପରିବର୍ତ୍ତନ ଆସିଲା । ଭାରତୀୟମାନେ ଏହି ସୁଯୋଗରୁ ବହୁଦିନ ପର୍ଯ୍ୟନ୍ତ ବଞ୍ଚିତ ଥିଲେ । ମୌଳିକ ବୈଜ୍ଞାନିକ ଗବେଷଣାରେ ଭାରତବାସୀମାନେ ଅନେକ କାଳପର୍ଯ୍ୟନ୍ତ କୌଣସି କୃତିତ୍ୱ ଦେଖାଇ ପାରି ନ ଥିଲେ; ମାତ୍ର ଅଳ୍ପ ସମୟ ମଧ୍ୟରେ ଭାରତରେ ଅନେକ ଶ୍ରେଷ୍ଠ ବୈଜ୍ଞାନିକ ଜନ୍ମଗ୍ରହଣ କରି-ଥିଲେ । ବିଜ୍ଞାନ କ୍ଷେତ୍ରରେ ସେହି ବୈଜ୍ଞାନିକମାନଙ୍କର ଦାନ ଅତୁଳନୀୟ ।

ବିଜ୍ଞାନାଚାର୍ଯ୍ୟ ଜଗଦୀଶଚନ୍ଦ୍ର ବସୁ ଏହିମାନଙ୍କ ମଧ୍ୟରେ ଅନ୍ୟତମ । ଅଭୂତପୂର୍ବ ମୌଳିକ ଗବେଷଣାଦ୍ୱାରା ସେ ସାରା ଜଗତକୁ ଆଚମ୍ବିତ କରିଦେଇଥିଲେ । ପାଶ୍ଚାତ୍ୟ ବୈଜ୍ଞାନିକ-ମାନଙ୍କର ଦୃଷ୍ଟି ସେହିଦିନଠାରୁ ଭାରତ ପ୍ରତି ଆକୃଷ୍ଟ ହେଲା । ଜଗତ୍ ସମକ୍ଷରେ ଭାରତର ସମ୍ମାନ ବୃଦ୍ଧି କରି ସେ ଭାରତର କଳଙ୍କ ଅପନୋଦନ କଲେ ।

୧୮୫୮ ଖ୍ରୀଷ୍ଟାବ୍ଦ ନଭେମ୍ବର ୧୯ ତାରିଖ ଦିନ ଢାକା ଜିଲ୍ଲାର ବିକ୍ରମପୁର ଅନ୍ତର୍ଗତ ରାଢ଼ିଖାଲ ଗ୍ରାମରେ ବିଖ୍ୟାତ ବସୁ ବଂଶରେ

ଜଗଦୀଶଚନ୍ଦ୍ରଙ୍କର ଜନ୍ମ । ତାଙ୍କର ପିତୃଦେବ ଭଗବାନଚନ୍ଦ୍ର ବସୁ ଡେପୁଟି ମାଜିଷ୍ଟ୍ରେଟ୍ ଥିଲେ । ସେ ଜଣେ ବିଦ୍ୟାନୁରାଗୀ, କର୍ମନିଷ୍ଠ ଓ ସଚ୍ଚରିତ୍ର ବ୍ୟକ୍ତି । ତାଙ୍କର ମାତା ମଧ୍ୟ ସ୍ନେହଶୀଳା ଓ ଜଣେ ଆଦର୍ଶ ଲଳନା । ପିତାମାତାଙ୍କ ଗୁଣ ନେଇ ପୁତ୍ରର ଜୀବନ ଗଢ଼ା ହୁଏ । ଏପରି ଆଦର୍ଶ ସ୍ଥାନୀୟ ପିତାମାତାଙ୍କର ପୁତ୍ର ବିଶ୍ୱବିଖ୍ୟାତ ହେବାରେ କିଛି ବିଚିତ୍ରତା ନାହିଁ । ଜଗଦୀଶ ଚନ୍ଦ୍ର ପିତାମାତାଙ୍କର ଯତ୍ନ ଓ ସ୍ନେହମୟ କୋଳରେ ବାଲ୍ୟକାଳ ଅତିବାହିତ କରିଥିଲେ । ବାଲ୍ୟ କାଳର ଶିକ୍ଷା ତାଙ୍କୁ ପରବର୍ତ୍ତୀ କାଳରେ ଉପଯୁକ୍ତ କରିଥିଲା । ପିତାଙ୍କ ଆଦର୍ଶରେ ଜୀବନ ଗଠିତ ହୋଇଥିଲା ।

ଭଗବାନ ବସୁ ସ୍ୱଦେଶ-ପ୍ରେମୀ ବ୍ୟକ୍ତି । ସେ ସରକାରୀ କର୍ମଚାରୀ ଥିଲେ ମଧ୍ୟ ଦେଶର ଉନ୍ନତି ନିମନ୍ତେ ଆପ୍ରାଣ ଚେଷ୍ଟା କରୁଥିଲେ । ତାଙ୍କର ସ୍ୱାଧୀନ ଚିନ୍ତାଧାରା, କର୍ମଦକ୍ଷତା ଓ ଚରିତ୍ରର ଦୃଢ଼ତା ଜଗଦୀଶଙ୍କୁ ଅନୁପ୍ରାଣିତ କରିଥିଲା । ଭଗବାନ ବାବୁ ସ୍ୱଦେଶର ପ୍ରାଚୀନ ଓ ଲୁପ୍ତ ଗୌରବକୁ ଫେରାଇ ଆଣିବା ନିମନ୍ତେ ସଚେଷ୍ଟ ଥିଲେ । ଭାରତର ଗରିମାମୟ ସଂସ୍କୃତି ତାଙ୍କର ଅନୁରାଗ ଥିଲା, କିନ୍ତୁ ସେ ଜାଣିଥିଲେ ଯେ ପାଶ୍ଚାତ୍ୟ ଦେଶବାସୀଙ୍କର ସମକକ୍ଷ ହେବାପାଇଁ ସ୍ୱଦେଶରେ ଶିଳ୍ପ ପ୍ରସାର ଏକ ମାତ୍ର ପନ୍ଥା । ଦେଶର ସମୃଦ୍ଧି ନିମନ୍ତେ ବ୍ୟାପକ ଭାବରେ ଶିକ୍ଷା, ବିଶେଷକରି କାରିଗରୀ ଶିକ୍ଷାର ପ୍ରସାର ଆବଶ୍ୟକ । ସେଥି ନିମନ୍ତେ ସେ କୃଷି, ଶିଳ୍ପ ଓ ବାଣିଜ୍ୟର ଉନ୍ନତିପାଇଁ ଚେଷ୍ଟା କରୁଥିଲେ । ଏ ଦେଶର ଲୁଗାକଳ ସ୍ଥାପନ କରିବା ନିମନ୍ତେ ଅକାତରେ ଅଜସ୍ର ଅର୍ଥ ବ୍ୟୟ କରିଥିଲେ । ନୂତନ ଉଦ୍ୟମରେ ଅର୍ଥ ବିନିଯୋଗ କରି ସେ ଅତ୍ୟନ୍ତ କ୍ଷତିଗ୍ରସ୍ତ ହେଲେ । କୃଷକମାନଙ୍କର ସର୍ବବିଧ ଉନ୍ନତି ନିମନ୍ତେ ସର୍ବପ୍ରଥମେ ଫରିଦ୍‌ପୁରରେ ଅଳ୍ପ ସୁଧରେ କରଜ ଦେବା

ବ୍ୟାଙ୍କ ସ୍ଥାପନ କରିଥିଲେ । ଆସାମରେ ସ୍ୱଦେଶୀ ଷ୍ଟୋର୍‌ସ ସ୍ଥାପନ କରିବା ବିଷୟରେ ସେ ଥିଲେ ଅଗ୍ରଣୀ । ନିଜ ବ୍ୟୟରେ ଶିଳ୍ପ ଶିକ୍ଷାଳୟ ବସାଇଥିଲେ । ଏହି ସବୁ କାର୍ଯ୍ୟ ନିମନ୍ତେ ସେ ପ୍ରଚୁର ଅର୍ଥ ବ୍ୟୟ କରି ସର୍ବସ୍ୱାନ୍ତ ହୋଇଥିଲେ ।

ଖ୍ରୀ ୧୮୭୦ରେ ବର୍ଦ୍ଧମାନ କମିଶନରଙ୍କର ସହକାରୀ ହୋଇ ଭଗବାନ ବାବୁ ବଦଳି ହେଲେ । ସେହି ସମୟରେ ମ୍ୟାଲେରିଆ ଜ୍ୱରରେ ପଡ଼ି ଅନେକ ଲୋକ ପ୍ରାଣତ୍ୟାଗ କଲେ । ବହୁତ ଗୁଡ଼ିଏ ପିଲା ପିତାମାତାଙ୍କୁ ହରାଇ ଅନାଥ ହେଲେ । ଭଗବାନ ବାବୁ ଅନାଥାଳୟ ସ୍ଥାପନ କରି ସେମାନଙ୍କୁ ଶିକ୍ଷା ଦେଲେ ।

ପିଲାଦିନରେ ସମସ୍ତେ ଖେଳିବାକୁ ଭଲ ପାଆନ୍ତି । ବାଳକ ଜଗଦୀଶ ବା ଏଥିରୁ କିଆଁ ବାଦ୍ ଯିବେ ? ସେ ଅନ୍ୟାନ୍ୟ ପିଲା-ମାନଙ୍କ ସହିତ ମିଶି ଖେଳାବୁଲା କରୁଥିଲେ । କାରିଗରମାନଙ୍କୁ କହି ଗୋଟିଏ ପିତଳ ତୋପ ନିର୍ମାଣ କରାଇ ଖେଳୁଥିଲେ । ଭଗବାନ ବାବୁ ଅତ୍ୟନ୍ତ ଦୂରଦର୍ଶୀ ବ୍ୟକ୍ତି । ସେ କେବେହେଲେ ଜଗଦୀଶଙ୍କର କୌତୂହଳ ଦମନ କରୁ ନ ଥିଲେ ।

ଜଗଦୀଶଙ୍କର ବାଲ୍ୟକାଳ ସ୍ନେହମୟ ପରିବେଷ୍ଟନୀ ମଧ୍ୟରେ ଅତିବାହିତ ହୋଇଥିଲା । ତାଙ୍କର ଗୋଟିଏ ଚାକର ଥିଲା । ସେ ପ୍ରଥମେ ଥିଲା ଗୋଟିଏ ଡକାୟତ ଦଳର ସର୍ଦ୍ଦାର । ଥରେ ଧରା-ପଡ଼ିବାରୁ ତାକୁ ଭଗବାନ ବାବୁଙ୍କ କୋର୍ଟକୁ ବିଚାର ନିମନ୍ତେ ଅଣାଗଲା । ବିଚାରରେ ଦୀର୍ଘ ବର୍ଷ ପର୍ଯ୍ୟନ୍ତ କାରାବାସର ଆଦେଶ ମିଳିଲା । ସେ ଜେଲରୁ ମୁକ୍ତ ହୋଇ ଭଗବାନ ବସୁଙ୍କ ନିକଟକୁ ଆସି ଗୋଟିଏ ଚାକିରି ମାଗିଲା । ପୂର୍ବକୃତ ପାପ ନିମିତ୍ତ ଅନୁତାପ କରି ଶାନ୍ତିମୟ ଜୀବନଯାପନ ନିମନ୍ତେ ଇଚ୍ଛା ପ୍ରକାଶ କଲା ।

ବାଳକ ଜଗତ୍ପ୍ରାଣଙ୍କର ତତ୍ତ୍ୱ ନେବା ପାଇଁ ଭଗବାନ ବାବୁ ତାଙ୍କୁ ନିଯୁକ୍ତ କଲେ । ସେ ଜଗତ୍ପ୍ରାଣଙ୍କୁ ସଙ୍ଗରେ ଧରି ଗୃହଶାଳୀକୁ ନିଏ । ପରେ ଜଣାଗଲା, ଡକାୟତ ସର୍ଦ୍ଦାର ବଡ଼ କୋମଳ ହୃଦୟ । ସେ ଜଗତ୍ପ୍ରାଣଙ୍କୁ ତାହାର ଅତୀତ ଦୁଃସାହସିକ କାର୍ଯ୍ୟାବଳୀ ସମ୍ବନ୍ଧରେ ବିଭିନ୍ନ କଥା କହେ । ବାଳକ ତାଙ୍କୁ ଖୁବ୍ ଭଲ ପାଉଥିଲେ । ତାହା ଉପରେ ଯେଉଁ ବିଶ୍ୱାସ ସ୍ଥାପିତ ହୋଇଥିଲା, ତାହା ଅପାତ୍ରରେ ପଡ଼ି ନ ଥିଲା । ଥରେ ଭଗବାନ ବାବୁ ସପରିବାର ନଦୀରେ ଯାଉଥିଲେ । ଏହି ସମୟରେ ଗୋଟିଏ ଡ଼କାୟତ ଦଳ ତାଙ୍କ ଡ଼ଙ୍ଗା ପଛରେ ଆସିବାକୁ ଲାଗିଲେ । ସେହି ବୃଦ୍ଧ ଡ଼ଙ୍ଗା ଉପରେ ଠିଆ ହୋଇ ଏକ ଅଦ୍ଭୁତ ଚିତ୍କାର କଲା । ଡକାୟତମାନେ ସେହି ଶବ୍ଦ ଶୁଣି ଫେରିଗଲେ ।

ଶିକ୍ଷା ସମ୍ବନ୍ଧରେ ଭଗବାନ ବାବୁଙ୍କର କେତେଗୁଡ଼ିଏ ନିଜସ୍ୱ ମତ ଥିଲା । ତାଙ୍କ ମତରେ ଇଂରେଜୀ ଭାଷା ଶିକ୍ଷା କରିବା ପୂର୍ବରୁ ସ୍ୱୀୟ ମାତୃଭାଷାରେ ଜ୍ଞାନ ଅର୍ଜ୍ଜନ କରିବା ବିଧେୟ । ଗ୍ରାମ୍ୟ ଗୃହଶାଳୀଗୁଡ଼ିକ ପ୍ରତି ତାଙ୍କର ଗଭୀର ବିଶ୍ୱାସ ଥିଲା । ପାଠ-ଶାଳାରେ ଧନୀ ଦରିଦ୍ର ଭେଦ ନ ଥାଏ । ସେ ବିଶ୍ୱାସ କରୁଥିଲେ ଯେ, ଶିକ୍ଷାଦାନ ଏକ ମହତ୍ତର ବ୍ରତ । ଶିକ୍ଷକ ଅର୍ଥ ପ୍ରତି ଲାଳାୟିତ ହେବା ଉଚିତ ନୁହେଁ ।

ଏହି ସମସ୍ତ ବିଷୟ ଚିନ୍ତାକରି ଜଗତ୍ପ୍ରାଣଙ୍କୁ ଗ୍ରାମ୍ୟପାଠ-ଶାଳାରେ ପଢ଼ାଇବା ନିମନ୍ତେ ଭଗବାନ ବାବୁ ସ୍ଥିର କଲେ । ଚାରି ବର୍ଷ ବୟସରେ ଜଗତ୍ପ୍ରାଣ ଗୋଟିଏ ପାଠଶାଳାକୁ ପଢ଼ିବାକୁ ଗଲେ । ଭଗବାନ ବାବୁଙ୍କ ଅଧୀନସ୍ଥ କର୍ମଚାରୀମାନେ ତାଙ୍କ ପିଲାଙ୍କୁ ଇଂରେଜୀ ସ୍କୁଲକୁ ପଠାଇଲେ । ବାଳକ ଜଗତ୍ପ୍ରାଣଚନ୍ଦ୍ର ଏହି ପାଠଶାଳାରେ

ନିଜର ମାତୃଭାଷା ଶିକ୍ଷା କଲେ । ଭାରତୀୟ ସାହିତ୍ୟ ଓ ସଂସ୍କୃତି ବିଷୟରେ ଜ୍ଞାନ ଅର୍ଜନ କଲେ । ମାତାଙ୍କଠାରୁ ଭାରତର ଅତୀତ ଗୌରବର କାହାଣୀମାନ ଶୁଣୁଥିଲେ । ପିତାଙ୍କ ସହିତ ଶିଳ୍ପ ଓ କାରଖାନା ସ୍ଥଳମାନ ଦେଖିବାପାଇଁ ଯାଉଥିଲେ । ସେହି ସ୍ଥଳମାନଙ୍କରେ ଦେଖିଲେ ଯେ, ଚର୍ମକାରମାନେ ବିଭିନ୍ନ କାର୍ଯ୍ୟରେ ନିୟୋଜିତ ଅଛନ୍ତି । ସେମାନେ ସ୍ୱୀୟ ହସ୍ତରେ ଅନେକ ଜିନିଷ ନିର୍ମାଣ କରୁଅଛନ୍ତି । ଏହା ଦେଖି ସେ ନିଜେ କିଛି କରିବାପାଇଁ ମନ କଲେ । ପିଲାଦିନେ ଗୋଟିଏ ପିତ୍ତଳ ତୋପ ନେଇ ଖେଳୁଥିଲେ । ସେଇଟା ଥିଲା ପ୍ରାଥମିକ ଅବସ୍ଥା । ବର୍ତ୍ତମାନ ନିର୍ମାତା ହେବାର ଇଚ୍ଛା ଆସିଲା । ଏହି ଇଚ୍ଛା ଫଳବତୀ ହୋଇଥିଲା ଓ ସେ ଉତ୍ତର କାଳରେ ଅନେକ ଯନ୍ତ୍ର ନିର୍ମାଣ କରିଥିଲେ ।

ଜଗଦୀଶ ଖ୍ରୀ: ୧୯୧୫ରେ ଫରିଦପୁର ସମ୍ମିଳନୀର ସଭାପତି ରୂପେ କହିଥିଲେ—"ପିତୃଦେବ ପିଲାଦିନେ ମୋତେ ପାଠଶାଳାରେ ପଢ଼ିବାକୁ ପଠାଇଲେ । ସେତେବେଳେ ପିଲାଙ୍କୁ ଇଂରାଜୀ ସ୍କୁଲରେ ପଢ଼ାଇବା ଆଭିଜାତ୍ୟର ନିଦର୍ଶନ ଥିଲା । ପାଠଶାଳାରେ ମୋର ଡାହାଣରେ ପିତାଙ୍କର ମୁସଲମାନ ଚପରାଶୀ ପୁଅ, ବାଁପଟରେ ଗୋଟିଏ କେଉଟ ପିଲା ବସେ । ମୁଁ ସେମାନଙ୍କଠାରୁ ପଶୁ ପକ୍ଷୀ, ଜଳଜନ୍ତୁମାନଙ୍କ ବୃତ୍ତାନ୍ତ ସ୍ଥିର ହୋଇ ଶୁଣେ । ପ୍ରକୃତିର କାର୍ଯ୍ୟ-ଅନୁସନ୍ଧାନର ପ୍ରବଳ ବାସନା ସେହିଦିନୁ ମୋ ମନରେ ଜାତ ହେଲା । ଛୁଟି ପରେ ସଙ୍ଗୀମାନଙ୍କ ସହିତ ଘରକୁ ଆସୁଥିଲେ । ମାଆ ସମସ୍ତଙ୍କୁ ଖାଇବାକୁ ଦେଉଥିଲେ । ସେକାଳର ନିଷ୍ଠାବତୀ ମହିଳା ଥିଲେ ହେଁ ଏହାଦ୍ୱାରା ନିଷ୍ଠା ହାନି ହେବ ମନେ କରୁନଥିଲେ । ପିଲାଦିନର ବନ୍ଧୁତାରୁ ନୀଚ ଜାତି ବୋଲି ଏକ ଶ୍ରେଣୀ ଅଛି, ହିନ୍ଦୁ ମୁସଲମାନ ବୋଲି ଯେ ଏକ ସମସ୍ୟା ଅଛି, ତାହା ମୁଁ ବୁଝିପାରି

ନ ଥିଲା ।" ଜଗଦୀଶ ଦେଶବାସୀଙ୍କ ସହିତ ଘନିଷ୍ଠ ଭାବରେ ପରିଚିତ ହୁଅନ୍ତି, ତଥାପି ଜନସାଧାରଣଙ୍କ ଅପେକ୍ଷା ନିଜକୁ ଉଚ୍ଚ ବୋଲି ବିଚାର କରିବାକୁ ନ ଶିଖନ୍ତି—ଏହା ଭଗବାନ ବାବୁଙ୍କର ଇଚ୍ଛା ଥିଲା । ଜଗଦୀଶଚନ୍ଦ୍ର ପିତାଙ୍କ ନୈତିକ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ; ତେଣୁ ନିଜକୁ ବଡ଼ ବୋଲି ଭାବିବାକୁ ଅବସର ପାଇଲେ ନାହିଁ । ନିଜକୁ ଦେଶର ଲୋକବୋଲି ଜାଣିଲେ ।

ତୁଳସୀ ଦୃଇ ପତ୍ରରୁ ବାସେ । ବାଲ୍ୟକାଳର କାର୍ଯ୍ୟକଳାପରୁ ଭବିଷ୍ୟତ ଜୀବନର ସୂଚନା ଧରିହୁଏ । ଜଗଦୀଶ ପିଲାଦିନୁଁ ପ୍ରତ୍ୟେକ କାର୍ଯ୍ୟରେ ଅସାଧାରଣ ଧୈର୍ଯ୍ୟ ଦେଖାଉଥିଲେ । ଏପରି ଗୁଣ ନ ଥିଲେ ଉତ୍ତର କାଳରେ ପ୍ରତିଷ୍ଠା ଲାଭ କରିନଥାନ୍ତେ ।

ଗୋଟିଏ ଘଟଣାରୁ ତାଙ୍କର ଅସାଧାରଣ ଧୈର୍ଯ୍ୟର ଦୃଷ୍ଟାନ୍ତ ମିଳିଥାଏ । ସେ ଥରେ ଘୋଡ଼ାରେ ଚଢ଼ି ଫରିଦପୁର ମେଳା ଦେଖିବାକୁ ଯାଉଥିଲେ । ସେଠାରେ ଘୋଡ଼ାଦୌଡ଼ ହେଉଥିଲା । ପିତାଙ୍କର ବନ୍ଧୁମାନେ ତାଙ୍କୁ ଘୋଡ଼ା ଦୌଡ଼ାଇବାପାଇଁ କହିଲେ । ସେ ଅନ୍ୟ ସବାରମାନଙ୍କ ସହିତ ଘୋଡ଼ାକୁ ଛାଡ଼ିଦେଲେ । ସେ ଆଗରୁ କେବେହେଲେ ଘୋଡ଼ା ଦୌଡ଼ାଇ ନ ଥିଲେ । ଏହା ପ୍ରଥମ ଘୋଡ଼ା-ଦୌଡ଼ । ସବାରମାନଙ୍କ ସହିତ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚି ଫେରିଆସିଲେ । ମାତ୍ର ଆଘାତ ପାଇ ରକ୍ତ ବହୁଥାଏ । ସେ କାହାକୁ କିଛି ନ କହି ଘୋଡ଼ା ଉପରେ ବସିଥାନ୍ତି । ତାଙ୍କ ଜୀବନକାଳ ମଧ୍ୟରେ ସେ ଅନେକ କଠିନ କାର୍ଯ୍ୟର ସମ୍ମୁଖୀନ ହୋଇଛନ୍ତି; କିନ୍ତୁ କେବେହେଲେ ଉତ୍ସାହ ହରାଇ ନାହାନ୍ତି । ଧୈର୍ଯ୍ୟ ଅବଲମ୍ବନ କରି ସଫଳତା ଅର୍ଜନ କରିଛନ୍ତି ।

ନଅ ବର୍ଷ ବୟସରେ ପାଠଶାଳାର ଶିକ୍ଷା ସମାପ୍ତ କରି ହାୟାର ସ୍କୁଲରେ ନାମ ଲେଖାଇଲେ । ଛଅମାସ ପରେ

କଲକତାର ସେଣ୍ଟ ଜେଭିୟର୍ସ କଲେଜ ଏଣ୍ଟ ସ୍କୁଲରେ ଭର୍ତ୍ତି ହେଲେ । ଏହିଠାରେ ସେ ପ୍ରଥମେ ଇଂରାଜୀ ଭାଷା ଶିକ୍ଷା କଲେ । ବିଜ୍ଞାନ-ପାଠର ଆରମ୍ଭ ଏହି ସ୍କୁଲରେ ହୋଇଥିଲା । ଏହି ସ୍କୁଲର ଅଧିକାଂଶ ଛାତ୍ର ଇଂରେଜ । ପ୍ରଥମରେ ତାଙ୍କୁ ବହୁତ ଅତ୍ୟାଚାର ସହ୍ୟ କରିବାକୁ ହୋଇଥିଲା । କେତେବେଳେ କେମିତି ବଡ଼ ପିଲାଙ୍କଠାରୁ ମାଡ ଖାଆନ୍ତି । ଦିନେ ଜଣେ ବଡ଼ ପିଲା ଜଗଦୀଶଙ୍କୁ ମାରିଲା । ସେ ସାହସ କରି ତାଙ୍କୁ ଓଲଟି ମାରିଲେ । ଅନ୍ୟ ପିଲମାନେ ଖୁବ ଖୁସି ହୋଇଗଲେ । ସେହିଦିନଠାରୁ ଅତ୍ୟାଚାର ବନ୍ଦ ହେଲା । ଆଉ କେହି ତାଙ୍କ ପ୍ରତି ଖରାପ ବ୍ୟବହାର କରିବା ନିମନ୍ତେ ସାହସ କଲେ ନାହିଁ । ସେହିଦିନଠାରୁ ଜଗଦୀଶ ଆତ୍ମରକ୍ଷା ପାଇଁ ଶିଖିଲେ ସାହସର ପ୍ରୟୋଜନ । ଉନ୍ନତି ଲାଭ କରିବାକୁ ହେଲେ ପରମୁଖାପେକ୍ଷୀ ହେବା ଠିକ୍ ନୁହେଁ । ଆତ୍ମନିର୍ଭରଶୀଳତା ଏକ ମହତ୍ତ୍ୱପୂର୍ଣ ।

ସ୍କୁଲରେ ପଢ଼ିବା ସମୟରେ ସେ ଗୋଟିଏ ମେସ୍‌ରେ ରହୁଥିଲେ । ସେଠି ଯେଉଁ ପିଲାମାନେ ରହୁଥିଲେ, ସେମାନେ ଜଗଦୀଶଙ୍କଠାରୁ ବୟସରେ ବଡ଼ । ତାଙ୍କ ସାଙ୍ଗରେ କେହି ମିଶନ୍ତି ନାହିଁ । ଜଗଦୀଶଚନ୍ଦ୍ର ଏକା ଏକା ଖେଳନ୍ତି । ଜଳଖିଆ ପଇସାରୁ କିଛି ସଞ୍ଚି ଖେଳନା କିଣନ୍ତି । ସେଇ ଖେଳନାଗୁଡ଼ିକ ନେଇ ଏକୁଟିଆ ଖେଳନ୍ତି । ସେ ମେସ୍‌ରେ ଗୋଟିଏ ଛୋଟ ବଗିଚା କରିଥିଲେ । ସେହି ବଗିଚାକୁ ନଳ ବସାଇ, ପାଣି ନେଇ, ନଈ, ନାଳ, ପୋଖରୀ କରି ପାଣି ମଡ଼ାଉଥିଲେ । ତାଙ୍କ ଦାର୍ଜିଲିଂ ଆବାସର ବସୁବିଜ୍ଞାନ ମନ୍ଦିର ବଗିଚାରେ ଏଇ ବାଲଖେଳାର ନିଦର୍ଶନ ଟିକଏ ବଡ଼ ଆକାରରେ ରଖାଯାଇଛି ।

ଜେଭିୟର୍ସ କଲିଜିଏଟ୍ ସ୍କୁଲରେ ଜଗଦୀଶଙ୍କର ଛାତ୍ରଜୀବନ ଖୁବ୍ ଆନନ୍ଦରେ କଟିଥିଲା । ସେହି ସ୍କୁଲର ଶିକ୍ଷକମାନେ ଛାତ୍ରମାନଙ୍କର ପଢ଼ାପଢ଼ି ପ୍ରତି ବିଶେଷ ଦୃଷ୍ଟି ଦେଉଥିଲେ । ବ୍ୟକ୍ତିଗତଭାବେ ଉପ୍ରାନ୍ତ ଉପଦେଶ ମଧ୍ୟ ଦେଉଥିଲେ । ଶିକ୍ଷକମାନେ ଛାତ୍ରଙ୍କ ସହିତ ମିଳି ମିଶି ଚଳୁଥିଲେ । ସେଠାରେ ଶିକ୍ଷାଦାନ-ପଦ୍ଧତି ଉନ୍ନତତର ଥିଲା । ଜଗଦୀଶ ଏହି ଶିକ୍ଷାପ୍ରଣାଳୀ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ । ପରେ ଯେତେବେଳେ ଅଧ୍ୟାପକ ହେଲେ, ଏହି ପ୍ରଣାଳୀରେ ସେ ପଢ଼ାଇଥିଲେ ।

ଷୋଳ ବର୍ଷ ବୟସରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେଣ୍ଟ ଜେଭିୟର୍ସ କଲେଜରେ ନାମ ଲେଖାଇଲେ । ଏହିଠାରେ ସେ ଅଧ୍ୟାପକ ଫାଦର ଲେଫଣ୍ଟଙ୍କର ସାହଚର୍ଯ୍ୟ ଲାଭ କଲେ । ଫାଦର ଲେଫଣ୍ଟ ଜଣେ ସୁବିଖ୍ୟାତ ବୈଜ୍ଞାନିକ । ଅଧ୍ୟାପକଙ୍କର ବକ୍ତୃତା ଶୁଣି ଓ ତାଙ୍କର ଗବେଷଣା ଦେଖି ଜଗଦୀଶଙ୍କର ଗବେଷଣା କରିବାରେ ଆଗ୍ରହ ଜନ୍ମିଲା । ଫାଦର ଲେଫଣ୍ଟ ଗୋଟିଏ ବିଜ୍ଞାନାଗାର ସ୍ଥାପନ କରିଥିଲେ । ସେହି ବିଜ୍ଞାନାଗାରର ଯନ୍ତ୍ରପାତି ଦେଖି ଜଗଦୀଶଚନ୍ଦ୍ର ଆଶ୍ଚର୍ଯ୍ୟ ହୋଇଗଲେ । ନିଜେ ସେହିପରି ଯନ୍ତ୍ରପାତି ନିର୍ମାଣ କରିବା ନିମନ୍ତେ ଭାବିଲେ ଓ ବୈଜ୍ଞାନିକ ଗବେଷଣାରେ ନିୟୋଜିତ ହେବାପାଇଁ ଚିନ୍ତା କଲେ ।

ସେଣ୍ଟ୍ ଜେଭିୟର୍ସ କଲେଜରୁ କୋଡ଼ିଏ ବର୍ଷ ବୟସରେ ସେ ଉପାଧି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଉଚ୍ଚଶିକ୍ଷା ନିମନ୍ତେ ବିଲାତ ଯିବାପାଇଁ ତାଙ୍କର ଇଚ୍ଛା ହେଲା; ମାତ୍ର ନାନା ବାଧାବିଘ୍ନ ଉପୁଜିଲା । ସେତେବେଳକୁ ପରୋପକାରୀ ଭଗବାନ ବାବୁ ପ୍ରାୟ ସର୍ବସ୍ୱାନ୍ତ ।

ସୁତରାଂ ବିଲାତ ଯାଇ ଉଚ୍ଚଶିକ୍ଷା ଲାଭ କରିବା କଠିନ ହୋଇ ଉଠିଲା । ତାଙ୍କ ପିତାଙ୍କର କେତେକ ବନ୍ଧୁ ଜଗଦୀଶଙ୍କୁ ପରାମର୍ଶ ଦେଲେ ଯେ, ବିଲାତ ଯାଇ ଭାରତୀୟ ସିଭିଲ ସର୍ଭିସ୍ (Indian Civil Service ) ପରୀକ୍ଷା ଦେଲେ ଭଲ ହେବ । ସେତେବେଳେ ଏହା ଖୁବ୍ ଭଲ ବୃତ୍ତି ଥିଲା; ମାତ୍ର ଭଗବାନ ବାବୁ ଏହି ପ୍ରସ୍ତାବର ତୀବ୍ର ବିରୋଧ କଲେ । ସେ ଜଣେ ସୁଦକ୍ଷ ଓ ବିଚକ୍ଷଣ ମାଜିଷ୍ଟ୍ରେଟ ଥିଲେ । ସେ ଇଚ୍ଛା କରୁଥିଲେ ଯେ, ଜଗଦୀଶ ତାଙ୍କପରି ମାଜିଷ୍ଟ୍ରେଟ ହୁଅନ୍ତୁ ନାହିଁ । ସେ କହିଲେ, "ମାଜିଷ୍ଟ୍ରେଟ ହେବା କଥା ହେବ ନାହିଁ । ଅନ୍ୟକୁ ଶାସନ କରିବା କଥା ଛାଡ଼ି ଆତ୍ମସମ୍ମାନ ବୃଦ୍ଧି କରିବା ଶ୍ରେୟସ୍କର । ସମାଜର ସେବା ଜୀବନର ଶ୍ରେଷ୍ଠ ବ୍ରତ ହେବା ବିଧେୟ । ଡ଼ାକ୍ତର କିମ୍ବା ଅଧ୍ୟାପକ ହେଲେ ଦେଶର ଓ ଦଶର ସେବା କରିବେ ।" ଶେଷରେ ସ୍ଥିର ହେଲା—ଜଗଦୀଶ-ଚନ୍ଦ୍ର ଡ଼ାକ୍ତରୀ ପଢ଼ିବେ । ମାତ୍ର ଆଉ ଏକ ଅସୁବିଧା ଦେଖାଦେଲା । ଭଗବାନବାବୁଙ୍କର ସ୍ୱାସ୍ଥ୍ୟଭଙ୍ଗ ହେଲା । ଡ଼ାକ୍ତରଙ୍କ ପରାମର୍ଶରେ ସେ ଦୁଇବର୍ଷ ଛୁଟି ନେଲେ । ଏହା ଫଳରେ ପରିବାରର ଆୟ କମିଲା । ମା ମଧ୍ୟ ପୁଅକୁ ବିଦେଶକୁ ପଠାଇବାକୁ ରାଜି ହେଲେ ନାହିଁ । ଯୋଗକୁ ଏହିସମୟରେ ସାନ ଭାଇ ମରିଗଲା । ବିଲାତ ଯିବାର ଇଚ୍ଛା ତ୍ୟାଗକରି ଜଗଦୀଶ ଜୀବିକା ଅର୍ଜନର ଉପାୟ ସ୍ଥିର କଲେ ।

କଥାରେ ଅଛି—ଭଲ କାର୍ଯ୍ୟରେ ଭଗବାନ ସହାୟ ହୁଅନ୍ତି । ଜଗଦୀଶଙ୍କୁ ମଧ୍ୟ ଭଗବାନ ସହାୟ ହେଲେ । ମାଆଙ୍କର ମତର ପରିବର୍ତ୍ତନ ହେଲା । ଜଗଦୀଶଙ୍କର ଇଚ୍ଛା ଜାଣି ସେ ତାଙ୍କୁ କହିଲେ— "ମୁଁ ଦେଖୁଛି ତୋର ବିଲାତ ଯିବାର ଇଚ୍ଛା । ହଉ ଯା, ମୁଁ ମୋର ମନ ସ୍ଥିର କଲିଣି । ବାପାଙ୍କର ସମସ୍ତ ଧନ ନଷ୍ଟ ହୋଇଛି । ମାତ୍ର ମୋର ଯାହା ଗହଣା ଅଛି, ସେଥିରେ ତୋର ବିଲାତ ଖର୍ଚ୍ଚ

ଚଳିପିବ । ମୋର କଛି ଟଙ୍କା ମଧ୍ୟ ଅଛି । ମୁଁ ବିଲାତ ଯିବାର କଥା କହୁ ବୁଝେ ନା । ମୁଁ ଖର୍ଚ୍ଚ ର ଭାର ନେଲ । ସେଠାରେ କଣ କରିବାକୁ ହେବ, ତାହା ତୁମ୍ଭେମାନେ ବୁଝ ।’’ଭଗବାନ ବାବୁ ଆଉ ମନା କଲେ ନାହିଁ । ବିଲାତରେ ଡାକ୍ତରୀ ପଢ଼ିବାର ସ୍ଥିର ହେଲା ।

ଜଗଦୀଶଚନ୍ଦ୍ର ଜଣେ ରାଜପୁତ ସିପାହୀଠାରୁ ଶିକାର କରିବା ଶିଖିଥିଲେ । ବିଲାତ ଯିବା ପୂର୍ବରୁ ଆସାମର ଜଣେ ଜମିଦାର ତାଙ୍କୁ ଶିକାର କରିବାକୁ ଯିବା ନିମନ୍ତେ ନିମନ୍ତ୍ରଣ କଲେ । ସେ ଶିକାର କରିବାକୁ ଆସାମ ଗଲେ । ଜମିଦାରଙ୍କ ଘରେ ପହଞ୍ଚି ସମସ୍ତ ଦିନ ଶିକାରରେ କଟାଇଲେ । ସନ୍ଧ୍ୟା ସମୟକୁ ଜ୍ୱରଭାବ ଜଣାଗଲା । କ୍ରମେ ଦେହରେ ଉତ୍ତାପ ବଢ଼ିବାକୁ ଲାଗିଲା । ସେଠାରେ ଚିକିତ୍ସାର ସେପରି କଛି ସୁବନ୍ଦୋବସ୍ତ ନ ଥିଲା । ତେଣୁ ସମସ୍ତେ ତାଙ୍କୁ କଲିକତା ପଠାଇ ଦେବାପାଇଁ ମତ ଦେଲେ । ଜମିଦାରଙ୍କ ଘର-ଠାରୁ ରେଲ ଷ୍ଟେସନ୍ ୨୧ ମାଇଲ । ସେଠାକୁ ଯିବାପାଇଁ କଛି ସୁବିଧା କରାଯାଇ ପାରିଲାନାହିଁ । ପାଲଙ୍କି ମଧ୍ୟ ମିଳିଲା ନାହିଁ । ଜଗଦୀଶ ଘୋଡ଼ା ଚଢ଼ା ଶିଖିଥିଲେ । ଘୋଡ଼ା ଖୋଜିବାରୁ ଖବର ମିଳିଲା, ଗୋଟେ ଦୁଷ୍ଟ ଘୋଡ଼ା ଅଛି । ଜଣେ ସବାରକୁ ମାରି ପକାଇବାରୁ ବନ୍ଧା ହୋଇଅଛି । ଅନ୍ୟ ଉପାୟ ନ ଥିବାରୁ ସେ ସେହି ଘୋଡ଼ାରେ ଯିବାପାଇଁ ସ୍ଥିର କଲେ । ଘୋଡ଼ାକୁ ଅସ୍ତାବଲରୁ ଅଣାଗଲା । ସେ ତାଙ୍କୁ ଦେଖିବା ମାତ୍ରେ କାମୁଡ଼ି ଗୋଡ଼ାଇଲା । ମାତ୍ର ଜଗଦୀଶ ଏକା ଡିଆଁକେ ଘୋଡ଼ା ପିଠିରେ ବସି ପଡ଼ି ଦୌଡ଼ାଇ ଦେଲେ । ଘୋଡ଼ା ଖୁବ୍ ଚଞ୍ଚଳ ଗତି କଲା । ବାଟରେ ଗୋଟିଏ ନଦୀର ପଡ଼େ । ସେହି ନଦୀ ଉପରେ ଗୋଟିଏ କାଠ ପୋଲ । ଘୋଡ଼ା ସେହି ରାସ୍ତାରେ ଗଲା । ଜଗଦୀଶ କଣ ଭାବି ତାକୁ ଅନ୍ୟ ରାସ୍ତାରେ ନେଲେ । ପରେ ଦେଖିଲେ— ବର୍ଷାରେ ପୋଲ ଭାଙ୍ଗି ଯାଇଛି । ଘୋଡ଼ା ସେହି ବାଟରେ ଯାଇଥିଲେ ଜଗଦୀଶଙ୍କର ମୃତ୍ୟୁ

ହୋଇଥାନ୍ତା । ଭଗବାନଙ୍କ ଦୟାରୁ ସେ ସେଥର ବିପଦରୁ ରକ୍ଷା ପାଇଲେ । ସ୍ୱାସ୍ଥ୍ୟରେ ଆଉ ଅସୁବିଧା ହୋଇ ନାହିଁ । ଭଲରେ କଲିକତାରେ ପଢ଼ୁଥିଲେ । ଘରେ ପଢ଼ନ୍ତି ଅନେକ ରକମର ଚିକିତ୍ସା କଲେ କିନ୍ତୁ ଆସାମ ଜ୍ୱର ଛାଡ଼ିଲା ନାହିଁ । ଜ୍ୱର ଦେହରେ ବିଲାତ ଗଲେ । ସମସ୍ତେ ଭାବିଥିଲେ ସମୁଦ୍ର ଯାତ୍ରାରେ ଜ୍ୱର ଛାଡ଼ିଯିବ । ଜ୍ୱର ଛାଡ଼ିଲା ନାହିଁ । ଅବଶେଷରେ ବିଲାତରେ ପଢ଼ୁଥିଲେ ।

ଜଗଦୀଶଚନ୍ଦ୍ର ଡାକ୍ତରୀ ପଢ଼ିବା କଥା ଆଗରୁ ସ୍ଥିର ହୋଇ ସାରିଥିଲା । ଉଚ୍ଚ ଆଶା ଓ ଆକାଙ୍କ୍ଷା ନେଇ ସେ ବିଲାତରେ ପଢ଼ୁଥିଲେ । କଲିକତା ବିଶ୍ୱବିଦ୍ୟାଳୟରୁ ଉପାଧି ପାଇଥିବାରୁ କୌଣସି ଅସୁବିଧା ହେଲା ନାହିଁ । ଲଣ୍ଡନ ବିଶ୍ୱବିଦ୍ୟାଳୟରେ ପ୍ରଥମ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଲେ ।

ପ୍ରଥମ ବାର୍ଷିକ ଶ୍ରେଣୀରେ ପଦାର୍ଥ ବିଦ୍ୟା, ରସାୟନ ବିଦ୍ୟା, ପ୍ରାଣୀ ବିଜ୍ଞାନ ଓ ଉଦ୍ଭିଦ ବିଜ୍ଞାନ ପଢ଼ାହୁଏ । କଲିକତାରେ ପ୍ରାଣୀ ବିଜ୍ଞାନ ପଢ଼ି ନ ଥିଲେ । ଏହି ପାଠ୍ୟ ତାଙ୍କୁ ନୂତନ ବୋଧ ହେଲା । ପ୍ରାଥମିକ ବୈଜ୍ଞାନିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଦ୍ୱିତୀୟ ବାର୍ଷିକ ଶ୍ରେଣୀରୁ ଡାକ୍ତରୀ ଶିକ୍ଷା ଆରମ୍ଭ ହୁଏ । ଶରୀରତତ୍ତ୍ୱ ଏହି ସମୟରେ ପଢ଼ାଯାଏ । ଶବ-ବ୍ୟବଚ୍ଛେଦ ଶରୀରତତ୍ତ୍ୱ ଅନ୍ତର୍ଗତ ପାଠ୍ୟ । ଶବ ବ୍ୟବଚ୍ଛେଦ ଗୃହର ଗନ୍ଧ ସେ ସହ୍ୟ କରିପାରିଲେ ନାହିଁ । ଫଳରେ ଜ୍ୱରର ପ୍ରକୋପ ବଢ଼ିଲା । ଡାକ୍ତର ରିଙ୍ଗର ଜଣେ ପ୍ରସିଦ୍ଧ ଅଧ୍ୟାପକ ଓ ଚିକିତ୍ସକ । ସେ ଜଗଦୀଶଙ୍କୁ ନିଜର ଚିକିତ୍ସାରେ ରଖିଲେ । ଅନେକ ଔଷଧ ଦେଲେ, କିନ୍ତୁ କିଛି ଫଳ ହେଲା ନାହିଁ । ଶରୀର ବିଦ୍ୟାର ଅଧ୍ୟାପକ ତାଙ୍କୁ ଡାକ୍ତରୀ ପଢ଼ା ଛାଡ଼ି ଦେବାପାଇଁ ପରାମର୍ଶ ଦେଲେ । ଡାକ୍ତର ରିଙ୍ଗର ମଧ୍ୟ ଏଥିରେ ଏକମତ ହେଲେ । ତେଣୁ ସେ ବାଧ୍ୟ ହୋଇ ଡାକ୍ତରୀ ପଢ଼ା ଛାଡ଼ିଲେ ।

ବିଲାତକୁ ସେ ଆସିଥିଲେ ଡାକ୍ତରୀ ପଢ଼ିବା ପାଇଁ । ତାହା ତାଙ୍କ ଭାଗ୍ୟରେ ଘଟିଲା ନାହିଁ । ବହୁତ ଭାବଚିନ୍ତା କେମ୍ବ୍ରିଜରେ ବିଜ୍ଞାନ ପଢ଼ିବେ ବୋଲି ସ୍ଥିର କଲେ । ଲଣ୍ଡନରୁ କେମ୍ବ୍ରିଜ ଆସିଲେ । ସେଠାରେ ଲାଟିନ ପଢ଼ି ପ୍ରବେଶିକା ପରୀକ୍ଷା ଦେଲେ । ଖ୍ରୀ:୧୮୮୧ରେ ବିଜ୍ଞାନର ଗୋଟିଏ ବୃତ୍ତି ପାଇ କ୍ରାଇଷ୍ଟ କଲେଜରେ ବିଜ୍ଞାନ ପଢ଼ିବା ଆରମ୍ଭ କଲେ । ସେ ପର୍ଯ୍ୟନ୍ତ ଜ୍ୱର ଛାଡ଼ି ନ ଥାଏ । ଚିକିତ୍ସକମାନଙ୍କ ପରାମର୍ଶରେ ପ୍ରତିଦିନ ଆଫୁଲ୍ ଫକାଇଲେ । ସେଥିରେ କିଛି ଫଳ ହେଲା ନାହିଁ । କାଳକ୍ରମେ ଅନେକ ଦିନରେ ଜର ଛାଡ଼ିଲା । ଖ୍ରୀ: ୧୮୮୪ରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ବି.ଏ. ପାସ୍ କଲେ । ଉପାଧି ପରୀକ୍ଷାରେ ତାଙ୍କର ପଠିତବ୍ୟ ବିଷୟ ଥିଲା— ପଦାର୍ଥ ବିଦ୍ୟା, ରସାୟନ ବିଦ୍ୟା ଓ ଉଦ୍ଭିଦ ବିଦ୍ୟା । ଏହା ପର-ବର୍ଷ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ବି. ଏସ୍ ସି. ଉପାଧି ଲାଭ କଲେ ।

ପଢ଼ା ସରିଲା ପରେ କଣ କରିବେ ଏହି ଚିନ୍ତା ଉପସ୍ଥିତ ହେଲା । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ସୁପ୍ରସିଦ୍ଧ ଅଧ୍ୟାପକ ଫସେଟ ସାହେବଙ୍କ ସହିତ ତାଙ୍କର ପରିଚୟ ଥିଲା । ସେ ଜଗଦୀଶଙ୍କୁ ଖଣ୍ଡିଏ ସୁପାରିଶ ପତ୍ର ଦେଇ ଭାରତର ତତ୍କାଳୀନ ବଡ଼ଲାଟ ଲର୍ଡ଼ ରିପନଙ୍କ ସହିତ ସାକ୍ଷାତ କରିବାପାଇଁ ତାଙ୍କୁ ଉପଦେଶ ଦେଲେ । ଦୀର୍ଘ ଚାରିବର୍ଷ ପରେ ବିଲାତରେ ଅଧ୍ୟୟନ ଶେଷକରି ସେ ଜନ୍ମଭୂମିକୁ ଫେରିଆସିଲେ ।

ଭାରତକୁ ଆସି ସିମଳାରେ ବଡ଼ଲାଟଙ୍କ ସହିତ ସାକ୍ଷାତ କଲେ । ଲର୍ଡ଼ ରିପନ୍ ତାଙ୍କୁ ବଙ୍ଗଳାର ଶିକ୍ଷା ବିଭାଗରେ କାର୍ଯ୍ୟ ଦେବାର ପ୍ରତିଶ୍ରୁତି ଦେଲେ । ରିପନ୍ ବଙ୍ଗର ଲାଟଙ୍କ ପାଖକୁ ଏହି ସମ୍ବନ୍ଧରେ ଲେଖିଲେ । ବଙ୍ଗଳାର ଲାଟ ଶିକ୍ଷା ବିଭାଗ ଡ଼ିରେକ୍ଟରଙ୍କ ନିକଟକୁ ଚିଠି ଦେଲେ । ଜଗଦୀଶ ଡ଼ିରେକ୍ଟର ଆଲ୍‌ଫ୍ରେଡ଼୍

ହପ୍‌ଟଙ୍କ ସହିତ ସାକ୍ଷାତ କଲେ । ବଙ୍ଗଳାର ଲାଟଙ୍କଠାରୁ ଆଦେଶ ଘେନି ଆସିଥିବାରୁ ସେ ଜଗଦୀଶଙ୍କ ଉପରେ ବିରକ୍ତ ହେଲେ । ତାଙ୍କୁ ପ୍ରାଦେଶିକ ସର୍ଭିସରେ କାର୍ଯ୍ୟ କରିବାପାଇଁ କହିବାରୁ ବସୁ ମହାଶୟ ଏପରି ଅପମାନଜନକ ପ୍ରସ୍ତାବରେ ଅସମ୍ମତି ପ୍ରକାଶ କଲେ ।

ବଡ଼ଲାଟ ରିପନଙ୍କର ଏହି କଥା ମନେ ଥାଏ । ଅନେକ ଦିନ ପର୍ଯ୍ୟନ୍ତ ଗେଜେଟରେ ଜଗଦୀଶଙ୍କ ନାମ ନ ବାହାରିବାର ଦେଖି ସେ ବଙ୍ଗଳାର ଲାଟଙ୍କୁ ଏହାର କାରଣ ପଚାରିଲେ । ବଙ୍ଗ ଲାଟ ଡ଼ିରେକ୍ଟରଙ୍କୁ ବିଳମ୍ବର କାରଣ ଜଣାଇବା ପାଇଁ ଲେଖିଲେ । ଡ଼ିରେକ୍ଟର ସାହେବ ଉପାୟ ନ ଦେଖି ତାଙ୍କୁ ପ୍ରେସିଡେନ୍‌ସି କଲେଜରେ ଅସ୍ଥାୟୀ ଭାବରେ ଅଧ୍ୟାପକ ରଖିବା ପାଇଁ ସ୍ଥିର କଲେ । ସେତେବେଳେ କୌଣସି କାର୍ଯ୍ୟରେ ସାହେବମାନେ ଯାହା ବେତନ ପାଉଥିଲେ, ଭାରତୀୟମାନେ ସେହି କାର୍ଯ୍ୟରେ ନିଯୁକ୍ତ ହେଲେ ତିନି ଭାଗରୁ ଦୁଇଭାଗ ପାଉଥିଲେ । ଜଗଦୀଶଙ୍କୁ ଅସୁବିଧାରେ ପକାଇବା ତାଙ୍କର ଇଚ୍ଛା ଥିଲା । ତେଣୁ ଆଦେଶ ମିଳିଲା—ବସୁ ଅସ୍ଥାୟୀ ଭାବରେ ରହୁଥିବାରୁ ତିନି ଭାଗରୁ ଭାଗେ ଦରମା ପାଇବେ । ଜଗଦୀଶ ଏହାର ପ୍ରତିବାଦ କଲେ । ମାତ୍ର କିଛି ଫଳ ନ ହେବାରୁ ସେ ଦରମା ଗ୍ରହଣ କଲେ ନାହିଁ ।

ବସୁ ମହାଶୟ କଲେଜରେ ପଦାର୍ଥ ବିଦ୍ୟା ପଢ଼ାଉଥିଲେ । ତାଙ୍କର ଅଧ୍ୟାପନାର ସୂତ୍ର ଦେଖି ଛାତ୍ରମାନେ ଆକୃଷ୍ଟ ହେଲେ । ଏଥିରେ ଉଚ୍ଚ ପଦସ୍ଥ ଅଧ୍ୟକ୍ଷ ଓ ଡ଼ିରେକ୍ଟର ସାହେବ ଖଡ଼୍‌ଗହସ୍ତ । ମାତ୍ର ଲେଖା ପଢ଼ାର ଉନ୍ନତି ଦେଖି ସେମାନେ ତାଙ୍କର ମତ ପରିବର୍ତ୍ତନ କଲେ । ହପ୍‌ଟ ସାହେବ ତାଙ୍କୁ ଅନେକ ସାହାଯ୍ୟ କରିଥିଲେ । ସେ ଇମ୍ପିରିଆଲ ସର୍ଭିସରେ ସ୍ଥାୟୀ ହେଲେ । ତିନି

ବର୍ଷରେ ବାକିଥିବା ପୁରା ଦରମା ଏକାଠି ପାଇଲେ । ଏକ ସଙ୍କଟମୟ ପରିସ୍ଥିତି ମଧ୍ୟରେ ତାଙ୍କର ଜୀବନ ଗଢ଼ା ହୋଇଥିଲା । ତାଙ୍କର ପିତା ପୀଡ଼ିତ । ନିଜେ କାମ କଲେ ମଧ୍ୟ ଆୟର ପନ୍ଥା ନାହିଁ । ଏପରି ଅବସ୍ଥାରେ ଘର ଚଳାଇବା କେପରି କଠିନ, ତାହା ସହଜେ ଅନୁମେୟ । ବସୁ ମହାଶୟଙ୍କ ସ୍ତ୍ରୀ ଶ୍ରୀମତୀ ଅବଳା ବସୁଙ୍କ ଧୈର୍ଯ୍ୟ ଓ କଷ୍ଟସହିଷ୍ଣୁତା ପ୍ରଶଂସନୀୟ । ତାଙ୍କର ତ୍ୟାଗ ସର୍ବଦା ସ୍ମରଣୀୟ । ସେ ତାଙ୍କର ସ୍ୱାମୀଙ୍କୁ ପ୍ରତିପଦରେ ସାହାଯ୍ୟ କରିଛନ୍ତି ।

ଭଗବାନ ବସୁ ଜଣେ ପରୋପକାରୀ ବ୍ୟକ୍ତି । ଅତ୍ୟଧିକ ଖର୍ଚ୍ଚ କରିବା ଫଳରେ ସେ ଋଣଗ୍ରସ୍ତ ହୋଇ ପଡ଼ିଥିଲେ । ଜଗଦୀଶଚନ୍ଦ୍ର ଏହି ଋଣ ପରିଶୋଧ କରିବା ନିମନ୍ତେ ଇଚ୍ଛା କଲେ । ସ୍ୱୀୟ ଉପାର୍ଜିତ ଅର୍ଥରେ ପରିଶୋଧ ଅସମ୍ଭବ ଜାଣି ସମସ୍ତ ପୈତୃକ ସମ୍ପତ୍ତି ବନ୍ଧକ କରି ମହାଜନମାନଙ୍କ ଟଙ୍କା ଦେଇଥିଲେ । ବାକି ଟଙ୍କା ପରେ ଦେବାପାଇଁ ପ୍ରତିଶ୍ରୁତି ଦେଲେ । ଯେତେବେଳେ ଦରମା ପାଇଲେ, ମହାଜନମାନଙ୍କର ବାକି ଟଙ୍କା ପରିଶୋଧ କଲେ । ଭଗବାନ-ବାବୁଙ୍କର ଏହି ସୁଖ ବେଶୀଦିନ ସ୍ଥାୟୀ ହେଲା ନାହିଁ । ଅଳ୍ପଦିନ ପରେ ତାଙ୍କର ମୃତ୍ୟୁ ହେଲା । ଏହାର ଦୁଇ ବର୍ଷ ପରେ ମାତା ମହାପ୍ରୟାଣ କଲେ । ପିତାମାତାଙ୍କୁ ଏପରି ଯଶସ୍ୱୀ ପୁତ୍ର ମିଳିବା ଭାଗ୍ୟର କଥା ।

ଅଧ୍ୟାପକ ବସୁ ପ୍ରେସିଡେନ୍ସି କଲେଜରେ ଅଧ୍ୟାପନା ଆରମ୍ଭ କରିବା ସମୟରେ ସେଠାରେ ଉତ୍କୃଷ୍ଟ ବିଜ୍ଞାନାଗାର ନ ଥିଲା । ସେ ବିଲାତରେ ଅନେକ ଉନ୍ନତ ଧରଣର ବିଜ୍ଞାନାଗାର ଦେଖିଥିଲେ । ସେଗୁଡ଼ିକ ତୁଳନାରେ ପ୍ରେସିଡେନ୍ସି କଲେଜରେ ବିଜ୍ଞାନାଗାର ପ୍ରାଥମିକ ଅବସ୍ଥାରେ ଥିଲା । ଗବେଷଣା କରିବାପାଇଁ ଯନ୍ତ୍ରପାତିର ଏକାନ୍ତ ଅଭାବ ଥାଏ । ସେ ଏହି ବିଜ୍ଞାନାଗାରର ଉନ୍ନତି ନିମନ୍ତେ

ଚେଷ୍ଟା କଲେ । ତାଙ୍କର ଚେଷ୍ଟାହେତୁ ବୈଜ୍ଞାନିକ ଯନ୍ତ୍ରପାତି କିଣିବା ପାଇଁ ଟଙ୍କା ମଞ୍ଜୁର ହେଲା । ବସୁ ମହାଶୟଙ୍କ ସଦିଚ୍ଛା ବଳରେ ଏହା ଗୋଟିଏ ପ୍ରଥମ ଶ୍ରେଣୀ ବିଜ୍ଞାନାଗାରରେ ପରିଣତ ହୋଇ ପାରିଥିଲା ।

ଜଗଦୀଶଙ୍କର ବୈଜ୍ଞାନିକ ଜୀବନକୁ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରିଯାଇପାରେ । ପଦାର୍ଥବିଦ୍ୟା ସମ୍ବନ୍ଧରେ ଗବେଷଣା ପ୍ରଥମ ପର୍ଯ୍ୟାୟଭୁକ୍ତ । ଦ୍ୱିତୀୟତଃ ସେ ଉଦ୍ଭିଦ ବିଦ୍ୟା ବିଷୟରେ ମଧ୍ୟ ଗବେଷଣା କରୁଥିଲେ । ଏଇ ଗବେଷଣାର ଫଳ ବିଜ୍ଞାନ ଜଗତରେ ଯୁଗାନ୍ତର ଆଣିଥିଲା । ପରିଣାମରେ ଜଡ଼ ଜଗତ ଓ ପ୍ରାଣୀ ଜଗତ ମଧ୍ୟରେ ଥିବା ପାର୍ଥକ୍ୟବୋଧ ଦୂରୀଭୂତ ହେଲା ।

ସେ ପ୍ରଥମେ ବିଦ୍ୟୁତ୍ ବିଷୟରେ ଗବେଷଣା ଆରମ୍ଭ କଲେ । ବୈଦ୍ୟୁତିକ ତରଙ୍ଗର ଗତି ଧରିବାପାଇଁ ଗୋଟିଏ ଯନ୍ତ୍ର ମଧ୍ୟ ନିର୍ମାଣ କଲେ । ଖ୍ରୀ: ୧୮୯୫ ମେ ମାସରେ ବିଦ୍ୟୁତ୍ ସମ୍ବନ୍ଧରେ ପ୍ରଥମ ମୌଳିକ ପ୍ରବନ୍ଧ କଲିକତା ଏସିଆଟିକ୍ ସୋସାଇଟିରେ ପାଠ କଲେ । ସେହି ପ୍ରବନ୍ଧ ଏସିଆଟିକ୍ ସୋସାଇଟିର ପତ୍ରିକାରେ ପ୍ରକାଶ ହେଲା । ସେହି ବର୍ଷ ତାଙ୍କର ଆଉ ଦୁଇଟି ପ୍ରବନ୍ଧ ଇଲେକ୍ଟ୍ରିସିଆନ ପତ୍ରିକାରେ ମଧ୍ୟ ପ୍ରକାଶ ପାଇଥିଲା । ଏହି ପ୍ରବନ୍ଧମାନ ବୈଜ୍ଞାନିକ-ମାନଙ୍କର ଦୃଷ୍ଟି ଆକର୍ଷଣ କଲା । ଲଣ୍ଡନର ରୟଲ୍ ସୋସାଇଟି ପ୍ରବନ୍ଧମାନଙ୍କର ପ୍ରଶଂସା କରି ଗବେଷଣା ପାଇଁ ଆର୍ଥିକ ସାହାଯ୍ୟ ଦେବାକୁ ସ୍ଥିର କଲେ । ସୋସାଇଟିର ପତ୍ରିକାରେ ଜଗଦୀଶଙ୍କର ପ୍ରବନ୍ଧ ପ୍ରକାଶିତ ହେଲା ।

ଏହାପରେ ବସୁ ବେତାରବାର୍ତ୍ତା ପ୍ରେରଣର ଗବେଷଣାରେ ଲାଗିଲେ । ଏହି ସମୟରେ ତିନିଜଣ ପ୍ରସିଦ୍ଧ ଅଧ୍ୟାପକ—ବୋଲନ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ମାର୍କୋନି, ଆମେରିକାର ଜଣେ ପ୍ରସିଦ୍ଧ

ବୈଜ୍ଞାନିକ ଓ ବସୁ ମହାଶୟ ବେତାର ବାର୍ତ୍ତା ଗବେଷଣା ଆରମ୍ଭ କଲେ । ଖ୍ରୀ: ୧୮୯୫ରେ ବଙ୍ଗର ଲାଟ ସାହେବ ଏବଂ ଅନ୍ୟାନ୍ୟ ପ୍ରସିଦ୍ଧ ବ୍ୟକ୍ତିମାନଙ୍କ ସମ୍ମୁଖରେ କଲିକତା ଟାଉନ୍ ହଲରେ ତାଙ୍କ ଆବିଷ୍କ୍ରିୟାର ପ୍ରାଥମିକ ପରୀକ୍ଷାଫଳ ଦେଖାଇଥିଲେ । ଉପସ୍ଥିତ ଲୋକମାନଙ୍କୁ ଆଶ୍ଚର୍ଯ୍ୟ କରି ବିଦ୍ୟୁତ୍ ପ୍ରବାହ ସମସ୍ତଙ୍କ ଅଗୋଚରରେ ପକ୍କା କାନ୍ଥକୁ ଭେଦ କରି ଗୋଟାଏ ଘଣ୍ଟା ଜନିଷକୁ ପକାଇ ଦେଲା, ଘଣ୍ଟା ବଜାଇଲା ଓ ବନ୍ଦ ହୋଇଥିବା ଗୋଟିଏ ଘରେ ବାରୁଦ ଫୁଟାଇଲା । ପ୍ରସିଦ୍ଧ ବୈଜ୍ଞାନିକ ଲର୍ଡ଼ କେଲଭିନ ତାଙ୍କର ଗବେଷଣାରେ ମୁଗ୍ଧ ହୋଇ ଅଭିନନ୍ଦନ ଜଣାଇଲେ ।

ବୈଜ୍ଞାନିକ ମାର୍କୋନି ବେତାରବାର୍ତ୍ତାର ଆବିଷ୍କର୍ତ୍ତା ଭାବେ ସୁନାମ ଅର୍ଜନ କରିଛନ୍ତି । ଏହା ସତ୍ୟ ହେଲେ ମଧ୍ୟ ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ହାର୍ଜ ସାହେବଙ୍କର ଆବିଷ୍କାର ଉପରେ ନିର୍ଭର କରି ଜଗଦୀଶଚନ୍ଦ୍ର ଓ ମାର୍କୋନି ଉଭୟେ ଗବେଷଣା ଆରମ୍ଭ କରିଥିଲେ । ଜଗଦୀଶ ଯେ ପ୍ରଥମେ ବେତାର ବାର୍ତ୍ତା ପ୍ରେରଣ କରିପାରିଥିଲେ, ତାହାର କେତେକ ପ୍ରମାଣ ଅଛି । ଅଧ୍ୟାପକ ଲଜ୍‌ଙ୍କ ଚିଠିରୁ ଏହା ଜଣାଯାଏ । ଚିଠିଟି ଏହିପରି—

"ପ୍ରିୟ ଜଗଦୀଶ, ବେତାର ବାର୍ତ୍ତା ପ୍ରେରଣ ସମ୍ପର୍କରେ ମୁଁ କଲେଜରେ ଗୋଟିଏ ବକ୍ତୃତା ଦେବାକୁ ଇଚ୍ଛା କରୁଛି । ତୁମେ ଯେ ମାର୍କୋନିଙ୍କ ପୂର୍ବରୁ ବେତାର ବାର୍ତ୍ତା ପ୍ରେରଣ କରିବାକୁ ସମର୍ଥ ହୋଇଅଛ, ତାହା ମୁଁ ସମସ୍ତଙ୍କୁ ଜଣାଇବାକୁ ଇଚ୍ଛା କରୁଅଛି । ତୁମେ ଆସି ମତେ ସାହାଯ୍ୟ କରିବ କି ? ବକ୍ତୃତା ସ୍ଥାନକୁ ମୁଁ ବଙ୍ଗଳାର ଲାଟ ସାହେବଙ୍କୁ (ସାର୍ ଉଇଲିଅମ ମ୍ୟାକେଞ୍ଜି) ଆମନ୍ତ୍ରଣ କରିଅଛି । ଇତି ।

ଇ ଲଜ୍ ।"

ବେତାର ବାର୍ତ୍ତା ପ୍ରେରଣ କରିଥିବାର ଶୁଣି ଫରାସୀ ବିଜ୍ଞାନ ପରିଷଦର ସଭାପତି କର୍ଣ୍ଣୁ ଜଗଦୀଶଙ୍କୁ ଏହିଭଳି ଅଭିନନ୍ଦନ ଜଣାଇଥିଲେ—"ଆପଣଙ୍କର ଆବିଷ୍କାର ଦ୍ୱାରା ଆପଣ ବିଜ୍ଞାନକୁ ବହୁଦୂର ଅଗ୍ରସର କରାଇ ଦେଇଛନ୍ତି । ଦୁଇହଜାର ବର୍ଷ ପୂର୍ବେ ଆପଣଙ୍କର ପୂର୍ବପୁରୁଷଗଣ ମାନବ ସଭ୍ୟତାର ଅଗ୍ରଣୀ ଥିଲେ ଏବଂ ବିଜ୍ଞାନ ଓ କଳାବିଦ୍ୟାର ଜ୍ଞାନର ଉଜ୍ଜ୍ୱଳ ଆଲୋକ ଜଗତ ସମକ୍ଷରେ ପ୍ରଜ୍ୱଳିତ କରିଥିଲେ । ଆପଣ ଆପଣଙ୍କର ପୂର୍ବ ପୁରୁଷମାନଙ୍କର ଗୌରବ କୀର୍ତ୍ତି ପୁନଃପ୍ରତିଷ୍ଠିତ କରିବାକୁ ଚେଷ୍ଟା କରନ୍ତୁ ।"

ମାର୍କୋନି ସାହେବଙ୍କର ଯନ୍ତ୍ର ଏହାପରେ ଆବିଷ୍କୃତ ହେଲା । ଜଗଦୀଶଚନ୍ଦ୍ର ପାଶ୍ଚାତ୍ୟ ଦେଶକୁ ଯିବା ପୂର୍ବରୁ ମାର୍କୋନି ବେତାର ବାର୍ତ୍ତା ପ୍ରେରଣ କରି ଖ୍ୟାତି ଲାଭ କଲେ । ଜଗଦୀଶ ସମ୍ମାନପ୍ରତ୍ୟାଶୀ ନ ଥିଲେ । ବିଜ୍ଞାନର ଉନ୍ନତି ତାଙ୍କର କାମ୍ୟ । ତେଣୁ ସେ ଏହି ଘଟଣାରେ ନୀରବ ରହିଗଲେ ।

ବିଲାତର ରୟାଲ ସୋସାଇଟି ଜଗଦୀଶଙ୍କର ଏହି ଗବେଷଣାର ପ୍ରଶଂସା କଲେ । ଲଣ୍ଡନ ବିଶ୍ୱବିଦ୍ୟାଳୟ ଡାକ୍ତର (D Sc) ଉପାଧି ଦେଇ ତାଙ୍କୁ ସମ୍ମାନ ଦେଖାଇଲେ । ରୟାଲ ସୋସାଇଟି ତାଙ୍କର ଶୁକ୍ରବାସରୀୟ ସଭାରେ ବକ୍ତୃତା ଦେବାପାଇଁ ଆମନ୍ତ୍ରଣ କଲେ । ବଙ୍ଗ ସରକାର ଓ ଶିକ୍ଷାବିଭାଗ ତାଙ୍କ ଗବେଷଣାର ସାହାଯ୍ୟ ପାଇଁ ଛଅମାସ ଛୁଟି ଦେଲେ । ବିଲାତର ଲିଭରପୁଲ ବ୍ରିଟିଶ ଆସୋସିଏସନ୍‌ରେ ବକ୍ତୃତା ଦେଲେ । ରୟାଲ ଇନ୍‌ଷ୍ଟିଚ୍ୟୁସନ୍ ମଧ୍ୟ ବକ୍ତୃତା ଦେବାକୁ ନିମନ୍ତ୍ରଣ କଲେ । ତାଙ୍କର ବକ୍ତୃତା ଶୁଣି ବିଲାତର ବୈଜ୍ଞାନିକମାନେ ସନ୍ତୁଷ୍ଟ ହେଲେ । ଏହାପରେ ଫ୍ରାନ୍‌ସରୁ ଫିଜିକାଲ୍ ସୋସାଇଟିର ନିମନ୍ତ୍ରଣ ପାଇ ଫ୍ରାନ୍‌ସକୁ ଗଲେ । ଫ୍ରାନ୍‌ସରୁ

ବର୍ଲିନ ଯାଇ ସେଠାରେ ସାଏନ୍ସ ଏକାଡେମିରେ ବକ୍ତୃତା ଦେଲେ । ସେହି ସଭାରେ ଅନେକ ବିଖ୍ୟାତ ବୈଜ୍ଞାନିକ ଉପସ୍ଥିତ ଥିଲେ । ଏହା ପରେ କାଏଲ ବିଶ୍ୱବିଦ୍ୟାଳୟରେ ବକ୍ତୃତା ଦେଇ ଭାରତବର୍ଷକୁ ପ୍ରତ୍ୟାବର୍ତ୍ତନ କଲେ ।

ଜଗଦୀଶଙ୍କର ବିଭିନ୍ନ ଆବିଷ୍କାର ମାନବକୁ ଜଡ଼ଜଗତ ସମ୍ବନ୍ଧରେ ନୂତନ ଆଲୋକ ପ୍ରଦାନ କରିଅଛି । ସେ ଆବିଷ୍କାର କଲେ ଯେ ସାମାନ୍ୟ ଟିଣ ଖଣ୍ଡ ଆଘାତ ପାଇଲେ, ବିଷାକ୍ତ ପଦାର୍ଥର ସଂସ୍ପର୍ଶରେ ଆସିଲେ ଅନ୍ୟାନ୍ୟ ଜୀବଜନ୍ତୁଙ୍କ ପରି ସ୍ପନ୍ଦିତ ହୁଏ ଓ ବ୍ୟଥା ଅନୁଭବ କରେ । ଉଦ୍ଭିଦ ଜଗତ ସମ୍ବନ୍ଧରେ ମଧ୍ୟ ଏହା ସତ୍ୟ । ସ୍ୱୀୟ ଆବିଷ୍କୃତ ଯନ୍ତ୍ର ସାହାଯ୍ୟରେ ସେ ପ୍ରମାଣ କଲେ ଯେ, ବେଙ୍ଗର ଗୋଟିଏ ପେଶୀ, ଗଛର ଡାଳ ଓ ଟିଣଖଣ୍ଡ ବାହାରୁ ଆଘାତ ପାଇଲେ ଏକ ରକମର ସ୍ପନ୍ଦନ ଅନୁଭବ କରିଥାନ୍ତି । ତାଙ୍କ ମତରେ ବିଶ୍ୱର ବିଶାଳ ଗ୍ରହମାନଙ୍କଠାରୁ ଆରମ୍ଭ କରି କ୍ଷୁଦ୍ରତମ କୀଟପତଙ୍ଗ ପର୍ଯ୍ୟନ୍ତ ଏକ ସୂତ୍ରରେ ବନ୍ଧା ହୋଇ ରହିଛନ୍ତି । ଏ ସମ୍ବନ୍ଧରେ ସେ ଲେଖିଛନ୍ତି --

"ଆଲୋକରେ ଭାସମାନ ଧୂଳିକଣା, ପୃଥିବୀରେ ଅଗଣିତ ଜୀବ ଓ ଆକାଶରେ ଦୀପ୍ୟମାନ ଅସଂଖ୍ୟ ସୂର୍ଯ୍ୟ ମଧ୍ୟରେ ଯେତେବେଳେ ଏକ ବିରାଟ ଐକ୍ୟ ଲକ୍ଷ୍ୟ କଲି, ସେତେବେଳେ ମୋର ପୂର୍ବପୁରୁଷଗଣ ତିନ ହଜାର ବର୍ଷ ପୂର୍ବେ ଭାଗୀରଥୀ କୂଳରେ ଯେଉଁ ମହାନ ସତ୍ୟ ଉଚ୍ଚାରଣ କରିଥିଲେ, ତାହାର କିୟଦଂଶ ମୋର ହୃଦୟଙ୍ଗମ ହେଲା—ବିଶ୍ୱର ଏହି ନିୟତ ପରିବର୍ତ୍ତନଶୀଳ ଅନନ୍ତ ବୈଚିତ୍ର୍ୟ ମଧ୍ୟରେ ଯେଉଁମାନେ ଯେହି ଐକ୍ୟ ଦେଖିପାରନ୍ତି, କେବଳ ସେହିମାନେ ସତ୍ୟ ପାଇଥାନ୍ତି ।"......

ସେ ପୁନର୍ବାର କହନ୍ତି—"ଯାହା ଶକ୍ତିର ଗତି ଥିଲା, ତାହା ଶକ୍ତିର ମୂର୍ତ୍ତି । ଶୂନ୍ୟରେ ବିକ୍ଷିପ୍ତ କୋଟି କୋଟି ଜଗତ ଆକାଶ ମଧ୍ୟ ଦେଇ ବନ୍ଧା । ଗୋଟିଏ ଜଗତର ସ୍ପନ୍ଦନ ଆକାଶ ମଧ୍ୟ ଦେଇ ଅନ୍ୟ ଜଗତକୁ ସଞ୍ଚାରିତ ହେଉଅଛି । ସୂର୍ଯ୍ୟକିରଣ ପୃଥିବୀର ପଡ଼ି ନାନା ରୂପ ଧରୁଅଛି । କିରଣରୂପ ଆକାଶ କମ୍ପନ ଆସି ବାୟୁମଧ୍ୟସ୍ଥ ଅଙ୍ଗାରକ ଅଣୁଗୁଡ଼ିକ ବିଚଳିତ କରାଇ ବୃକ୍ଷ ଦେହ ଗଠନ କରେ ।...ସୂର୍ଯ୍ୟକିରଣ ଦ୍ୱାରା ବୃଦ୍ଧିପ୍ରାପ୍ତ ଉଦ୍ଭିଦ ଭୋଜନ କରି ପ୍ରାଣୀଗଣ ଜୀବନଧାରଣ କରୁଛନ୍ତି ।...ଜଡ଼ ପଦାର୍ଥ ଆକାଶର ଆବର୍ତ୍ତ ମାତ୍ର । କେଉଁ କାଳରେ ଆକାଶରେ, ସମୁଦ୍ରରେ ଅଗଣ୍ୟ ଆବର୍ତ୍ତ ଉଦ୍ଭୂତ ହୋଇ ପରମାଣୁର ସୃଷ୍ଟି ହେଲା ? ଏଗୁଡ଼ିକର ମିଳନରେ ବିନ୍ଦୁ, ଅସଂଖ୍ୟ ବିନ୍ଦୁର ସମଷ୍ଟିରେ ଜଗତ, ମହାଜଗତ ଉତ୍ପନ୍ନ ହୋଇଅଛି ।...ଏକ ଅଣୁ କେତେବେଳେ ମୃତ୍ତିକା ଆକାରରେ, ଉଦ୍ଭିଦ ଆକାରରେ, ମନୁଷ୍ୟ ଦେହରେ, ପୁଣି କେତେବେଳେ ଅଦୃଶ୍ୟ ବାୟୁସ୍ତରରେ ବିଦ୍ୟମାନ; କୌଣସି ବସ୍ତୁର ବିନାଶ ନାହିଁ । ଶକ୍ତି ଅବିନଶ୍ୱର । ପ୍ରତି କଣା ଏହା ଦ୍ୱାରା ଅଣୁ-ପ୍ରବିଷ୍ଟ—ଏହି ମହାଶକ୍ତି-ସ୍ରୋତ ବିଶ୍ୱଜଗତକୁ ପ୍ରତି ମୁହୂର୍ତ୍ତରେ ଭାଙ୍ଗୁଅଛି ଏବଂ ଗଢ଼ୁଅଛି । ଜୁଆର-ଭଟ୍ଟା, କ୍ଷୟବୃଦ୍ଧି ତରଙ୍ଗ ପରି ଚତୁର୍ଦ୍ଦିଗରେ ଘୂରି ବୁଲୁଅଛି ।" ଉଦ୍ଭିଦ ଜଗତ ସମ୍ବନ୍ଧରେ ସେ ମାନବର ଭ୍ରାନ୍ତ ଧାରଣା ଦୂର କଲେ ।

ବିଖ୍ୟାତ ଜର୍ମାନ ବୈଜ୍ଞାନିକ ଫେଲପର ଓ ହାରବର୍ଲାଣ୍ଡ ମତ ଦେଇଥିଲେ ଯେ, ତରୁଲତାଙ୍କର ଉତ୍ତେଜିତ ହେବାର ଶକ୍ତି ନାହିଁ । ଏହି ସିଦ୍ଧାନ୍ତକୁ ବୈଜ୍ଞାନିକମାନେ ଗ୍ରହଣ କରିଥିଲେ । ମାତ୍ର ଅଧ୍ୟାପକ ବସୁ ଭିନ୍ନମତ ପ୍ରକାଶ କଲେ । ତାଙ୍କ ମତରେ ତରୁ-ଲତାର ପ୍ରାଣ ଅଛି । ମନୁଷ୍ୟ ଓ ଅନ୍ୟାନ୍ୟ ପ୍ରାଣୀଙ୍କପରି ସେମାନଙ୍କର

ଶିରପ୍ରଶିରା ଅଛି । ମନୁଷ୍ୟ ଦେହରେ ରକ୍ତ ସଞ୍ଚାଳନ ପରି ଏହି ଶିରାଗୁଡ଼ିକ ମଧ୍ୟରେ ରସ ଚଳାଚଳ ହୋଇଥାଏ । ତରୁଲତା କଷ୍ଟ ଅନୁଭବ କରନ୍ତି । ଗଛକୁ ଧକ୍କାଟାଏ ପକାଇଲେ ସେ ତାହା ଅନୁଭବ କରେ ଓ ତାକୁ କଷ୍ଟ ହୁଏ । ଏହି ବେଦନା କିଛିକାଳ ପରେ ଉପଶମ ହୁଏ । ଉତ୍ତାପ ପାଇଲେ ସ୍ପନ୍ଦନ ବର୍ଦ୍ଧିତ ହୁଏ ଓ ଶୈତ୍ୟରେ କମେ । କ୍ଲୋରଫର୍ମ ପ୍ରଭୃତି ବିଷପ୍ରୟୋଗ କଲେ ତରୁଲତାଙ୍କର ନିଶାହୁଏ । ଉଦ୍ଭିଦ ଦେହର ଗୋଟିଏ ବିଶେଷ ଅଂଶ ମାନବର ହୃତ୍‌ପିଣ୍ଡ ପରି କାର୍ଯ୍ୟ କରେ ।

ବୈଜ୍ଞାନିକମାନେ ଉଦ୍ଭିଦଗୁଡ଼ିକୁ ଦୁଇ ଭାଗରେ ବିଭକ୍ତ କରିଥିଲେ । କେତେକ ଅନୁଭବ କରିଥାନ୍ତି ଓ ଆଉ କେତେକ କରନ୍ତି ନାହିଁ । ଲଜକୁଳି ଲତାକୁ ଛୁଇଁଲେ, ତାର ପତ୍ରଗୁଡ଼ିକ ସଙ୍କୁଚିତ ହୁଅନ୍ତି । ଅନ୍ୟ ବୃକ୍ଷର ପତ୍ର ସଙ୍କୁଚିତ ହୁଅନ୍ତି ନାହିଁ । ତେଣୁ ସେମାନଙ୍କ ମତରେ, ଲଜକୁଳୀ ଲତା ଅନୁଭବ କରେ । ମାତ୍ର ଅନ୍ୟମାନଙ୍କର ଏହି ଶକ୍ତି ନାହିଁ । ଜଗଦୀଶଚନ୍ଦ୍ର ଏହା ମିଥ୍ୟା ବୋଲି ପ୍ରମାଣ କଲେ । ସେ କହିଲେ, ସବୁ ଗଛ ଅନୁଭବ କରନ୍ତି । ଲଜକୁଳୀପତ୍ର ମୂଳରେ ଗୋଟିଏ ପେଶୀ ଥାଏ । ସ୍ପର୍ଶ ଫଳରେ ଏହି ପେଶୀଟି ସଙ୍କୁଚିତ ହୋଇ ପତ୍ରଟିକୁ ବଙ୍କାଇ ଦେଇଥାଏ । ଅନ୍ୟାନ୍ୟ ବୃକ୍ଷର ପତ୍ରମୂଳରେ ବହୁତଗୁଡ଼ିଏ ପେଶୀ ଥିବାରୁ ସେଗୁଡ଼ିକର ସଙ୍କୋଚନ ହେତୁ ପତ୍ର ବଙ୍କି ପାରେ ନାହିଁ । କ୍ଲୋରଫର୍ମ ଦ୍ୱାରା ପତ୍ରର ଗୋଟିଏ ପାଖ ଅସାଡ଼ କରି ପ୍ରମାଣ କଲେ ଯେ, ସ୍ପର୍ଶ ଫଳରେ ପତ୍ରଟି ବଙ୍କା ହୋଇଯାଏ ।

ଅଧ୍ୟାପକ ବସୁଙ୍କର ଯନ୍ତ୍ରଟି ଅତି ସୂକ୍ଷ୍ମ । ଏହି ଯନ୍ତ୍ରଟି ଭାରତୀୟ କାରିଗରମାନଙ୍କ ଦ୍ୱାରା ଭାରତରେ ନିର୍ମିତ । ସେ ଯନ୍ତ୍ର ସାହାଯ୍ୟରେ

ପ୍ରମାଣ କଲେ ଯେ, ଲତାଗୁଡ଼ିକ ରାତିରେ ଶୁଅନ୍ତି ଓ ସକାଳେ ଉଠନ୍ତି ।

ଡାକ୍ତର ବସୁ ଆଉ ଗୋଟିଏ ନୂତନ ତଥ୍ୟ ଆବିଷ୍କାର କଲେ । ସେ କହିଲେ ଯେ, ଧାତୁମାନଙ୍କର ବି ଜୀବନ ଅଛି । କେତେଗୁଡ଼ିଏ ଧାତୁ ଜୀବନ୍ତ ଓ ଅନ୍ୟ କେତେକ ମୃତ ବୋଲି ଭାବିବା ଭୁଲ ଅଟେ । ଗାଲ୍‌ଭାନୋମିଟର (Golvanometer) ସାହାଯ୍ୟରେ ସେ ପ୍ରମାଣ କଲେ ଯେ, ଧାତୁଗୁଡ଼ିକ ମଧ୍ୟ କ୍ଳାନ୍ତ ହୋଇ ପଡ଼ନ୍ତି । ଗୋଟିଏ ବ୍ଲେଡ଼୍ ବାରମ୍ବାର ବ୍ୟବହାର କଲେ, ତାହା କ୍ଳାନ୍ତ ହୋଇପଡ଼େ । ଅର୍ଥାତ୍ ତାହା ବ୍ୟବହାରରେ ଅଯୋଗ୍ୟ ହୁଏ । କିନ୍ତୁ କିଛି ଦିନ ସେହି ବ୍ଲେଡ଼ଟି ବ୍ୟବହାର ନ କଲେ, ତାହା ପୁନର୍ବାର କାର୍ଯ୍ୟରେ ଲାଗିଥାଏ । ସେ ଅଧିକନ୍ତୁ ମଧ୍ୟ ପ୍ରମାଣ କଲେ ଯେ, ଉତ୍ତାପ ଓ ବିଷ ପ୍ରୟୋଗରେ ଧାତୁଗୁଡ଼ିକର ପରିବର୍ତ୍ତନ ଆସିଥାଏ । ତାଙ୍କର ଭାଷାରେ—"ଆମେ ଯଦି ଅତିରିକ୍ତ ପରିମାଣରେ ଅହିଫେନ ସେବନ କରିବା, ତେବେ ଏହା ଆମର ଇନ୍ଦ୍ରିୟଗୁଡ଼ିକୁ ମୃତପ୍ରାୟ କରିଦେବ । କିନ୍ତୁ ଅଳ୍ପ ବ୍ୟବହାର କଲେ ଏହା ଆମକୁ ଶକ୍ତି ପ୍ରଦାନ କରିବ । ଧାତୁଗୁଡ଼ିକ ସମ୍ବନ୍ଧରେ ମଧ୍ୟ ଏହା ସତ୍ୟ ।" ଏହି ଭାବରେ ଅଧ୍ୟାପକ ବସୁ ପ୍ରାଣୀ, ଉଦ୍ଭିଦ ଓ ଧାତୁ ଜଗତକୁ ଏକ ବୋଲି ପ୍ରମାଣ କଲେ ।

ଖ୍ରୀ: ୧୯୦୦ରେ ପାରିସ୍ ବିଜ୍ଞାନ କଂଗ୍ରେସରେ ଯୋଗ ଦେବାପାଇଁ ନିମନ୍ତ୍ରଣ ପାଇଲେ । ଅନ୍ୟମାନେ ଈର୍ଷା ପ୍ରକାଶ କରି ଜଗଦୀଶଚନ୍ଦ୍ର ଯେପରି ପାରିସ ଯାଇ ନ ପାରିବେ, ସେଥିପାଇଁ ଚେଷ୍ଟା କଲେ । ସେତେବେଳେ ସାର୍ ଜନ୍ ଉଡ଼୍‌ବର୍ଣ୍ଣ ବଙ୍ଗଳାର ଲାଟ ଥାଆନ୍ତି । ସେ ଦିନେ ଡାକ୍ତର ବସୁଙ୍କ ବିଜ୍ଞାନାଗାର ଦେଖିବାକୁ

ସାଇ ତାଙ୍କର ଗବେଷଣା ପ୍ରଣାଳୀରେ ସନ୍ତୁଷ୍ଟ ହୋଇଗଲେ । ଉତ୍ତର୍ପତ୍ତି ସନ୍ତୁଷ୍ଟ ହେବାରୁ ଆଉ ବାଧା ଦେବ ପାଇଁ କାହାର ସାହସ ହେଲ ନାହିଁ । କଂଗ୍ରେସରେ ଯୋଗ ଦେବାପାଇଁ ଜୁନ୍ ମାସରେ ପାରିସ୍ ଯାତ୍ରା କଲେ । ପାରିସ୍ ଯିବା ସମୟରେ ସେ ସ୍ୱୀୟ ଯନ୍ତ୍ରଟିକୁ ନେଇ ଯାଇଥିଲେ ।

ବିଜ୍ଞାନ କଂଗ୍ରେସର ସଭାପତିଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ସେ ସ୍ୱୀୟ ଆବିଷ୍କୃତ ତଥ୍ୟ ସମ୍ବନ୍ଧରେ ବକ୍ତୃତା ଦେଲେ । ସେଠାରେ ବିଭିନ୍ନ ଦେଶର ପ୍ରସିଦ୍ଧ ବୈଜ୍ଞାନିକମାନେ ଉପସ୍ଥିତ ଥିଲେ । ସେମାନେ ବସୁଙ୍କର ତଥ୍ୟ ସମ୍ବନ୍ଧରେ ଆଗ୍ରହ ପ୍ରକାଶ କରି ତାଙ୍କର ବିବରଣୀ ପାଠ କଲେ । ସେ ସ୍ୱୀୟ ଯନ୍ତ୍ରଟି ବୈଜ୍ଞାନିକମାନଙ୍କୁ ଦେଖାଇଲେ । ସେମାନେ ଏପରି ସୂକ୍ଷ୍ମ ଯନ୍ତ୍ର ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେ ଆମେରିକା, ଇଉରୋପ ଓ ଜାପାନର ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କରେ ତାଙ୍କର ଯନ୍ତ୍ରଟି ଦେଖାଇଥିଲେ ।

ଏହାପରେ ଅଧ୍ୟାପକ ବସୁ ଫ୍ରାନ୍ସରୁ ବିଲାତ ଗଲେ । ସେହି ସମୟରେ ସେଠାରେ ଏକ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ କାର୍ଯ୍ୟ ଖାଲି ଥିଲା । ବିଲାତର ବନ୍ଧୁମାନେ ସେହି ପଦ ଗ୍ରହଣ କରିବା ପାଇଁ ବସୁଙ୍କୁ ଅନୁରୋଧ କଲେ । ସେଠାରେ ରହିଲେ ଗବେଷଣା କରିବାକୁ ସୁଯୋଗ ମିଳିବ ଜାଣି ମଧ୍ୟ ସେ ଏହି ପ୍ରସ୍ତାବରେ ରାଜି ହେଲେ ନାହିଁ । ସେ ମାତୃଭୂମିର ଗୌରବ ବୃଦ୍ଧି କରିବା ନିମନ୍ତେ ଚେଷ୍ଟା କରୁଥିଲେ । ସ୍ୱୀୟ ମାତୃଭୂମିର ଆକର୍ଷଣ ତ୍ୟାଗ କରି ବିଲାତରେ ବାସ କରିବାକୁ ସେ ପାଶ୍ଚାତ୍ପଦ ଥିଲେ ।

ରୟାଲ ଇନ୍ଷ୍ଟିଚ୍ୟୁସନ୍ ବିଲାତର ସର୍ବଶ୍ରେଷ୍ଠ ବୈଜ୍ଞାନିକ ସଭା । ପ୍ରସିଦ୍ଧ ବୈଜ୍ଞାନିକମାନେ ଏଠାରେ ବକ୍ତୃତା ଦେଇଥାନ୍ତି ।

ଡାକ୍ତର ବସୁଙ୍କ ତଥ୍ୟର ମର୍ମ ଏପର୍ଯ୍ୟନ୍ତ ଅନେକେ ବୁଝିପାରି ନ ଥିଲେ । ସେ ରୟାଲ ଇନ୍‌ଷ୍ଟିଚ୍ୟୁସନ୍‌ରେ ବକ୍ତୃତା ଦେବାର ସ୍ଥିର କରିଗଲେ । ଖ୍ରୀ: ୧୯୦୦ ନଭେମ୍ବର ତା ୨ ଦିନ ରୟାଲ ଇନ୍‌ଷ୍ଟିଚ୍ୟୁସନ୍‌ରେ ବକ୍ତୃତା ଦେବାର ନିମନ୍ତ୍ରଣ ପାଇଲେ । ତାଙ୍କର ବକ୍ତୃତା ଶୁଣି ବୈଜ୍ଞାନିକମାନେ ଆଶ୍ଚର୍ଯ୍ୟ ହେଲେ ।

ଧାତୁ ସମ୍ବନ୍ଧରେ ସେ କହୁଥିଲେ । ଧାତୁତତ୍ତ୍ୱବିତ୍ ସାର୍ ରବର୍ଟ ଅଷ୍ଟିନ କହିଲେ—"ମୁଁ ସମସ୍ତ ଜୀବନ ଧାତୁ ସମ୍ବନ୍ଧରେ ଗବେଷଣା କରୁଛି । ଧାତୁର ମଧ୍ୟ ଜୀବନ ଅଛି, ଶୁଣି ଖୁସି ହେଲି ।" ପ୍ରାଚୀନ ଭାରତରେ ଆର୍ଯ୍ୟ ଋଷିମାନେ ଏହି ତଥ୍ୟ ଜାଣିଥିଲେ । ଭାରତବର୍ଷର ସାଧାରଣ ଲୋକମାନେ ମଧ୍ୟ ଏହି କଥା ଜାଣିଛନ୍ତି ।

ବିଲାତରେ ରୟାଲ ସୋସାଇଟି ପୁଣି ଏହି ବିଷୟରେ ବକ୍ତୃତା ଦେବାକୁ ଅନୁରୋଧ କଲେ । ଯେଉଁ ବିଷୟରେ ଥରେ ବକ୍ତୃତା ଦିଆ ଯାଇଥାଏ, ସେହି ବିଷୟରେ ରୟାଲ ସୋସାଇଟିରେ ପୁନର୍ବାର ବକ୍ତୃତା ଦିଆଯାଏ ନାହିଁ । ଜଗଦୀଶଙ୍କର ବିଷୟବସ୍ତୁ ଅତି ଚମତ୍କାର ଏବଂ ନୂତନ । ଏହି ଦୃଷ୍ଟିରୁ ସେ ନିୟମର ବ୍ୟତିକ୍ରମ କରିଗଲେ । ପ୍ୟାରିସ୍‌ରେ ଥିବା ସମୟରେ ବିଭିନ୍ନ ବୈଜ୍ଞାନିକ ସଭାମାନଙ୍କରେ ତିନିଥର ବକ୍ତୃତା ଦେଇଥିଲେ । ଏହାପରେ କେମ୍ବ୍ରିଜ ଓ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟମାନଙ୍କରେ ବକ୍ତୃତା ଦେଲେ । ଅଧ୍ୟାପକ ଷ୍ଟୁଆର୍ଡ ଓ ସାର୍ ଫ୍ରାନ୍‌ସିସ୍ ଡାରଉଇନ୍ ତାଙ୍କର ବକ୍ତୃତା ଶୁଣି ମୁଗ୍ଧ ହୋଇଗଲେ । ତାଙ୍କର ଯନ୍ତ୍ର ସମ୍ବନ୍ଧରେ ଉଚ୍ଚ ମନ୍ତବ୍ୟ ଦେଇଥିଲେ । ଅଧ୍ୟାପକ ଷ୍ଟାରଲିଂ, ଓଲିଭର ପ୍ରଭୃତି ଶତ-ମୁଖରେ ପ୍ରଶଂସା କଲେ । କେମ୍ବ୍ରିଜର ଉଦ୍ଭିଦ- ବିଦ୍ୟା ବିଭାଗ

ବୃକ୍ଷଗୁଡ଼ିକୁ ଭଲ ଅବସ୍ଥାରେ ରଖିବାପାଇଁ ଭାରତବର୍ଷରୁ ମାଟି ମଧ୍ୟ ମଗେଇ ନେଲେ ।

ବିଲାତରୁ ଅଷ୍ଟ୍ରିୟାର ରାଜଧାନୀ ଭିଏନାକୁ ଯାଇ ସେଠାର ବିଶ୍ୱବିଦ୍ୟାଳୟରେ ସ୍ୱୀୟ ଆବିଷ୍କାର ସମ୍ବନ୍ଧରେ ତଥ୍ୟପୂର୍ଣ୍ଣ ଭାଷଣ ଦେଲେ । ସମ୍ବାଦପତ୍ର ଏହି ବକ୍ତୃତା ଶୁଣି କହିଲେ—"ଡାକ୍ତର ବସୁଙ୍କ ଆବିଷ୍କାର ହେତୁ ଇଉରୋପ ଭାରତବର୍ଷଠାରେ ଋଣୀ । ଡ଼ାକ୍ତର ବସୁଙ୍କର ଚମକପ୍ରଦ ଆବିଷ୍କାର ବିଷୟ ଶୁଣି ଆମେରିକାର ଚିକାଗୋ, କାଲିଫର୍ଣ୍ଣିଆ, ହାର୍ଭାର୍ଡ଼ ଓ କଲମ୍ବିଆ ପ୍ରଭୃତି ବିଶ୍ୱ-ବିଦ୍ୟାଳୟଗୁଡ଼ିକ ତାଙ୍କୁ ନିମନ୍ତ୍ରଣ କଲେ । ସେଠାରେ ସେ ତାଙ୍କର ଆବିଷ୍କାର ସମ୍ବନ୍ଧରେ ବକ୍ତୃତା ଦେଲେ ।

ଅଧ୍ୟାପକ ବସୁଙ୍କ ବକ୍ତୃତା ଶୁଣି ଶ୍ରୋତୃବର୍ଗ ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ । ଜଣେ ବିଖ୍ୟାତ ଆବିଷ୍କାରକ ଭାବେ ସେ ପୃଥିବୀର ପ୍ରତ୍ୟେକ ଦେଶରେ ସମ୍ମାନ ଲାଭ କଲେ । ପ୍ରାଚ୍ୟର କଳ୍ପନାଶକ୍ତି ସହିତ ପ୍ରତୀଚୀର ସୂକ୍ଷ୍ମ ବିଚାରଧାରା ତାଙ୍କଠାରେ ରହିଥିଲା । ଏହି ଉଭୟ ଗୁଣର ସମ୍ମିଶ୍ରଣରେ ଡ଼ାକ୍ତର ବସୁ ଜଣେ ଅସାଧାରଣ ବୈଜ୍ଞାନିକ ହୋଇ ପାରିଥିଲେ ।

ଆଚାର୍ଯ୍ୟ ଜଗଦୀଶଚନ୍ଦ୍ର ସ୍ୱୀୟ ଆବିଷ୍କୃତ ଯନ୍ତ୍ରମାନଙ୍କର ନାମ ସଂସ୍କୃତ ଭାଷାରେ ଦେଇଥିଲେ । ସେଗୁଡ଼ିକର ନାମ 'କୁଞ୍ଚନମାନ', 'ବର୍ଦ୍ଧମାନ', 'ଶୋଷଣମାନ' ଥିଲା । ଏପରି ନାମକରଣ ନେଇ ବିଲାତର ସମ୍ବାଦପତ୍ରମାନେ ଉପହାସ କଲେ । କେବଳ ବୋଷ୍ଟନ ପତ୍ରିକା ସମର୍ଥନ କରି ଲେଖିଲେ—"ନବାବିଷ୍କୃତ ଯନ୍ତ୍ରର ନାମକରଣ ଇଉରୋପରେ ମୃତଭାଷା ଲାଟିନ ବା ଗ୍ରୀକ୍ ନାମାନୁ-ସାରେ ହେଉଅଛି । ଯେ ଯନ୍ତ୍ର କରିଅଛନ୍ତି, ତାଙ୍କର ନାମକରଣରେ

ଅଧିକାର । ସେ ଜୀବନ୍ତ ସଂସ୍କୃତ ନାମ ଦେଇ କି ଅପରାଧ କଲେ ? ଗୋଟିଏ ଆମେରିକା ବିଶ୍ୱବିଦ୍ୟାଳୟରେ ବକ୍ତୃତା ଦେବା ସମୟରେ ଜଣେ ଅଧ୍ୟାପକ କହିଲେ, "କୁଷ୍ଣନମାନ ଯନ୍ତ୍ରର ବ୍ୟାଖ୍ୟା କରନ୍ତୁ ।" ଜଗଦୀଶଚନ୍ଦ୍ର କିଛି ବୁଝିପାରିଲେ ନାହିଁ । ବହୁତ କଷ୍ଟରେ ବୁଝିଲେ 'କୁଞ୍ଚନମାନ' ଯନ୍ତ୍ର ବିଷୟରେ ପଚାରୁଛନ୍ତି । 'ବୃଦ୍ଧି ମାନ' 'ବରଡ଼ୋଆନ' ହୋଇଛି । ସେ ବାଧ୍ୟ ହୋଇ ସ୍ୱଦେଶୀ ନାମ ପରିତ୍ୟାଗ କଲେ ।

ଦୀର୍ଘକାଳ ପରେ ଆଚାର୍ଯ୍ୟ ବସୁ ଭାରତବର୍ଷକୁ ଫେରି ଆସିଲେ । କଲିକତା ବିଶ୍ୱବିଦ୍ୟାଳୟ ଡ଼ାକ୍ତର (D. Sc) ଉପାଧି ଦେଇ ତାଙ୍କୁ ସମ୍ମାନ ପ୍ରଦର୍ଶନ କଲେ । ବକ୍ତୃତା ଦେବାପାଇଁ ପଞ୍ଜାବ ବିଶ୍ୱବିଦ୍ୟାଳୟ ଆମନ୍ତ୍ରଣ କଲେ । ଏହି ବକ୍ତୃତା ପାଇଁ ତାଙ୍କୁ ବାରଶହ ଟଙ୍କା ମିଳିଥିଲା । ସେ ଏହି ଟଙ୍କା ନ ନେଇ ଗବେଷଣା କରିବାପାଇଁ ଦାନ କରିଦେଲେ ।

ଭାରତ ସରକାର ଜଗଦୀଶଚନ୍ଦ୍ରଙ୍କର ଗୁଣ ଗ୍ରହଣ କଲେ । ଖ୍ରୀ. ୧୯୦୩ରେ ସି. ଆଇ. ଇ. (C.I.E.) ପଦ ଦେଲେ । ଖ୍ରୀ: ୧୯୧୧ରେ ସି: ଏସ୍‌. ଆଇ (C.S.I) ପଦ ମିଳିଲା । ଖ୍ରୀ. ୧୯୧୩ରେ ପେନ୍‌ସନ୍ ନେବାର ଥିଲା । ବଙ୍ଗଳା ସରକାର ତାଙ୍କ ଚାକିରୀର କାର୍ଯ୍ୟକାଳ ଦୁଇବର୍ଷ ବଢ଼ାଇଦେଲେ । ପୁଣି ଦରମାରେ ପେନ୍‌ସନ୍ ଦେଲେ । ଖ୍ରୀ ୧୯୧୭ରେ ନାଇଟ ପଦ ପାଇଲେ । କଲିକତାର ଅଧିବାସୀ ଓ ବସୁଙ୍କର ଛାତ୍ରମାନେ ତାଙ୍କୁ ଅଭିନନ୍ଦନ ଜଣାଇଲେ ।

ଚାକିରୀରୁ ଅବ୍ୟାହତି ନେବା ପରେ ସେ 'ବସୁ ବିଜ୍ଞାନ ମନ୍ଦିର' ( Bose Institute ) ସ୍ଥାପନ କଲେ । ଏହି ବିଜ୍ଞାନ ମନ୍ଦିରଟି ଏକ

ସୂତର ବଗିଚା ଦ୍ୱାରା ପରିବେଷ୍ଟିତ । ପ୍ରାଚୀନ ଭାରତୀୟ ଶିଳ୍ପପଦ୍ଧତି ଅନୁଯାୟୀ ବିଜ୍ଞାନ ମନ୍ଦିରଟି ନିର୍ମିତ । କେବଳ ଭାରତୀୟ ନୁହନ୍ତି, ଇଉରୋପୀୟମାନେ ମଧ୍ୟ ଏଠାରେ ଗବେଷଣା କରିଥାନ୍ତି । ବିଜ୍ଞାନ ମନ୍ଦିର ସହିତ ଗୋଟିଏ କାରଖାନା ଥିଲା ଏବଂ ସେଠାରେ ସୂକ୍ଷ୍ମ ଯନ୍ତ୍ରମାନ ନିର୍ମାଣ କରାଯାଉଥିଲା । ଏହି ଯନ୍ତ୍ରଗୁଡ଼ିକ ବିକ୍ରୟ ହୋଇ ଅନେକ ଟଙ୍କା ମିଳୁଥିଲା । ଅଧ୍ୟାପକ ବସୁ ସେ ସମସ୍ତ ଟଙ୍କା ଗବେଷଣାରେ ଲଗାଉଥିଲେ । ସରକାରୀ କାର୍ଯ୍ୟରୁ ଅବସର ନେବା ପରେ, ସେ ଦିବାରାତି ବିଜ୍ଞାନ ମନ୍ଦିରରେ କଟାଉଥିଲେ । ବିଜ୍ଞାନାଲୋଚନା ତାଙ୍କର ପ୍ରଧାନ କାର୍ଯ୍ୟ ଥିଲା । ସେ ଅର୍ଥ ପାଇଁ ଲାଳାୟିତ ନ ଥିଲେ । ସେ ତାଙ୍କର ଛାତ୍ରମାନଙ୍କୁ କହିଛନ୍ତି— "ପ୍ରକୃତ ଛାତ୍ର ଯଶ, କ୍ଷମତା କିମ୍ବା ସୁଖ ସ୍ୱାଚ୍ଛନ୍ଦ୍ୟ ଲୋଡ଼େ ନାହିଁ । ସେ ଜ୍ଞାନ ଓ ସତ୍ୟ ପାଇଁ ପରିଶ୍ରମ କରେ । ସେ ସମସ୍ତ ଜିନିଷ ପରିତ୍ୟାଗ କରି ସତ୍ୟର ଅନ୍ୱେଷଣ କରେ; କାରଣ ଏହାକୁ ସେ ମାନବର ମହତ୍ତର କର୍ତ୍ତବ୍ୟ ବୋଲି ଭାବିଥାଏ ।"

କିଛି କାଳ ପରେ ସେ ପୁଣି ଇଉରୋପ ଭ୍ରମଣରେ ଯାଇ ବିଖ୍ୟାତ ବିଶ୍ୱବିଦ୍ୟାଳୟମାନଙ୍କରେ ବକ୍ତୃତା ଦେଇଥିଲେ । ତାଙ୍କର ବକ୍ତୃତାକୁ ବୈଜ୍ଞାନିକ ଏବଂ ସାଧାରଣ ଲୋକମାନେ ଆଦର କରିଥିଲେ । ସେ ଇଜିପ୍ଟ୍ ଭ୍ରମଣରେ ଯାଇ ସେଠା ସରକାରଙ୍କର ଅତିଥିଭାବେ ରହିଥିଲେ । ଡାକ୍ତର ବସୁ ଇଜିପ୍ଟର ଅଧିକାଂଶ ଶିକ୍ଷାନୁଷ୍ଠାନରେ ଭାଷଣ ଦେଇଥିଲେ ।

ତାଙ୍କର ସପ୍ତତିତମ ଜନ୍ମ ଉତ୍ସବରେ ପୃଥିବୀର ବିଭିନ୍ନ ଦେଶର ଲୋକମାନେ ଅଭିନନ୍ଦନ ଜଣାଇଥିଲେ । ବିଭିନ୍ନ ଦେଶ

ମଧ୍ୟରେ ସୌହାର୍ଦ୍ଦ୍ୟ ଓ ମୈତ୍ରୀଭାବ ରକ୍ଷିବା ପାଇଁ ସେ ପୃଥିବୀବାସୀଙ୍କୁ ନିବେଦନ କରିଥିଲେ ।

ଖ୍ରୀ: ୧୯୩୭ ନଭେମ୍ବର ତା ୨ ଦିନ ଶ୍ରୀମତୀ ବସୁଙ୍କୁ ସଙ୍ଗରେ ନେଇ ଗିରିଡ଼ିକୁ ବାୟୁ ପରିବର୍ତ୍ତନ ପାଇଁ ଯାଇଥିଲେ । ସେଇଦିନ ତାରିଖ ସକାଳ ପର୍ଯ୍ୟନ୍ତ ସୁସ୍ଥ ଓ ପ୍ରଫୁଲ୍ଲ ଦେଖା ଯାଉଥିଲେ । ଆଚାର୍ଯ୍ୟ ବସୁଙ୍କର ପ୍ରାତଃସ୍ନାନର ଅଭ୍ୟାସ । ସବୁଦିନ ପରି ସେଦିନ ମଧ୍ୟ ଗାଧୋଇବା ପାଇଁ ଗାଧୁଆଘରକୁ ଗଲେ । ବହୁତ ସମୟ ପର୍ଯ୍ୟନ୍ତ ସେଠୁ ଘରୁ ବାହାରିଲେ ନାହିଁ । ଶ୍ରୀମତୀ ବସୁ ଯାଇ ଦେଖିଲେ, ସେ ଅଜ୍ଞାନ ହୋଇ ପଡ଼ିଛନ୍ତି । ଡାକ୍ତରଙ୍କୁ ଡକାଗଲା, ମାତ୍ର କିଛି ଫଳ ହେଲା ନାହିଁ । ଅଳ୍ପ ସମୟ ପରେ ମର୍ତ୍ତ୍ୟଭୂମି ପରିତ୍ୟାଗ କରି ସେ ଅମରଧାମକୁ ଚାଲିଗଲେ ।

ସେ ଥିଲେ କାମର ମଣିଷ । ମୃତ୍ୟୁ ପର୍ଯ୍ୟନ୍ତ ବିଜ୍ଞାନ ଚର୍ଚ୍ଚାରୁ ବିରତ ନ ଥିଲେ । ପ୍ରତ୍ୟେକ ବ୍ୟକ୍ତି ତାର ଜୀବନ କାଳ ମଧ୍ୟରେ କିଛି ମହତ୍ତର କାର୍ଯ୍ୟ କରିବା ନିମିତ୍ତ ସେ ଉପଦେଶ ଦେଉଥିଲେ । ସେ କହିଛନ୍ତି—"ଅପରକୁ ଦୋଷ ଦେବା ଅନୁଚିତ । କିଛି ଭୁଲ୍ ହେଲେ; ଜଣେ ନିଜକୁ ଦୋଷୀ କରିବା ଉଚିତ, ଅପରକୁ ନୁହେଁ । ଲୋକମାନେ କିଛି କାର୍ଯ୍ୟ କରି ନ ପାରିଲେ ଅସୁବିଧାଜନକ ପରିସ୍ଥିତି ଉପରେ ସମସ୍ତ ଦୋଷ ଢ଼ାଳି ଦେଇଥାନ୍ତି । କୌଣସି ଅସୁବିଧା ହେଲେ, ଜଣେ ପରିସ୍ଥିତି ଉପରେ ଦୋଷ ଦେବା ଉଚିତ ନୁହେଁ; କିନ୍ତୁ ତାକୁ ଅତିକ୍ରମ କରିବାକୁ ଚେଷ୍ଟା କରିବା ଉଚିତ ।" ସେ ତାଙ୍କର ଛାତ୍ରମାନଙ୍କୁ ନୈତିକତା ସମ୍ବନ୍ଧରେ ଶିକ୍ଷା ଦେଉଥିଲେ ।

ଆଚାର୍ଯ୍ୟ ଜଗଦୀଶ ଜଣେ ଦେଶପ୍ରିୟ ବ୍ୟକ୍ତି । ସ୍ୱୀୟ ମାତୃଭୂମିର ଗୌରବ ସମ୍ବନ୍ଧରେ ସେ ସଚେତନ ଥିଲେ । ତାଙ୍କର କାର୍ଯ୍ୟ ଫଳରେ ଦେଶର ଗୌରବ ବୃଦ୍ଧି ପାଉ—ଏହା ଥିଲା ତାଙ୍କର ଅନ୍ତରର ଇଚ୍ଛା । ମାତୃଭୂମିର ଗୌରବ ବୃଦ୍ଧି ପ୍ରତ୍ୟେକ ଭାରତୀୟର କାର୍ଯ୍ୟ । ଅତୀତରେ ଭାରତ ଯେପରି ପୃଥିବୀକୁ ସତ୍ୟପଥ ଓ ଜ୍ଞାନର ଆଲୋକ ଦେଖାଇଥିଲା, ବର୍ତ୍ତମାନ ମଧ୍ୟ ସେହି କାର୍ଯ୍ୟକରୁ । କେବଳ ପୂର୍ବ ଗୌରବ ବିଷୟ ଆଲୋଚନା ନ କରି, ମାନବର ଜ୍ଞାନବୃଦ୍ଧି କରିବା ନିମନ୍ତେ ସାହାଯ୍ୟ କରିବା କର୍ତ୍ତବ୍ୟ । ସ୍ୱଲିଖିତ ସୁବିଖ୍ୟାତ ଗ୍ରନ୍ଥ 'ଜଡ଼ ଓ ପ୍ରାଣୀ ଜଗତରେ ସ୍ପନ୍ଦନ' ଦେଶବାସୀଙ୍କ ନାମରେ ଉତ୍ସର୍ଗ କରିଥିଲେ । ଥରେ ଅଧ୍ୟାପକ ଗ୍ଲାସ୍‌ଗୋ ଭାରତ ପ୍ରତି କଟାକ୍ଷ କରି କହିଲେ—"ଆପଣଙ୍କର କଥା ସ୍ୱତନ୍ତ୍ର; କିନ୍ତୁ ଗୋଟିଏ ମାତ୍ର କୋକିଳର କୁହୁ ସ୍ୱରରେ ବସନ୍ତର ଆବିର୍ଭାବ ସୂଚିତ ହୁଏ ନାହିଁ ।" ଜଗଦୀଶ ତତ୍‌କ୍ଷଣାତ୍ ଉତ୍ତର ଦେଲେ—"ଆପଣଙ୍କର ଭୟ କରିବାର କାରଣ ନାହିଁ । ଅତି ଶୀଘ୍ର ଭାରତରେ ଶତ ଶତ କୋକିଳ ବସନ୍ତର ଆଗମନ ଘୋଷଣା କରିବେ ।" ଜଗଦୀଶଙ୍କର ଏହି ଭବିଷ୍ୟତ ବାଣୀ ସଫଳତା ଲାଭ କରିଅଛି ।

ପୃଥିବୀବାସୀଙ୍କ ସମ୍ମୁଖରେ ଜଗଦୀଶ ସ୍ୱୀୟ ଦେଶର ସମ୍ମାନ ବୃଦ୍ଧି କଲେ । ଅନ୍ୟମାନେ ଭାରତର ଗୌରବ ସମ୍ବନ୍ଧରେ ସଚେତନ ହେଲେ । ଯୁକ୍ତପ୍ରଦେଶର (ବର୍ତ୍ତମାନ ଉତ୍ତର ପ୍ରଦେଶ) ଲାଟ କହିଥିଲେ—"ଭାରତର ଭବିଷ୍ୟତ ଅତି ଉଜ୍ଜ୍ୱଳ । ଯେଉଁ ଦେଶର ଆଧ୍ୟାତ୍ମିକ କ୍ଷେତ୍ରରେ ମହାତ୍ମା ଗାନ୍ଧି, ସାହିତ୍ୟ କ୍ଷେତ୍ରରେ ରବୀନ୍ଦ୍ରନାଥ, ବିଜ୍ଞାନ କ୍ଷେତ୍ରରେ ସାର୍ ବସୁଙ୍କ ପରି ଲୋକ ଅଛନ୍ତି, ସେ ଦେଶରେ ନାହିଁ କଣ ? ନ ହେବ କଣ ? ଭଗବାନ କରନ୍ତୁ, ତାଙ୍କର କଥା ସତ୍ୟ ହେଉ ।"

ମାତୃଭୂମି ଭାରତବର୍ଷକୁ ସେ ଅତି ଉଚ୍ଚ ସ୍ଥାନ ଦେଉଥିଲେ । ସେ ଥରେ ରବୀନ୍ଦ୍ରନାଥଙ୍କ ନିକଟକୁ ଲେଖିଥିଲେ—"...ମୋତେ ଯଦି ଶହେ ଥର ଜନ୍ମଗ୍ରହଣ କରିବାକୁ ହୁଏ; ତେବେ ମୁଁ ପ୍ରତ୍ୟେକ ଥର ହିନ୍ଦୁସ୍ଥାନରେ ଜନ୍ମଗ୍ରହଣ କରିବି ।"

ଜଗଦୀଶଙ୍କର ପ୍ରତିଭା ଅନନ୍ୟସାଧାରଣ । ସେ ଯେ କୌଣସି କ୍ଷେତ୍ରରେ ସାଫଲ୍ୟ ଅର୍ଜନ କରି ପାରିଥାନ୍ତେ । କବି ଗୁରୁ ରବୀନ୍ଦ୍ରନାଥ ତାଙ୍କୁ କହିଥିଲେ—"ବନ୍ଧୁ, ଯଦିଓ ତୁମ୍ଭେ ବିଜ୍ଞାନକୁ ଅନ୍ତରରେ ସ୍ଥାନ ଦେଇଅଛ; ତଥାପି ସାହିତ୍ୟ-ସରସ୍ୱତୀ ସେହି ପଦ ଦାବୀ କରି ପାରିଥାନ୍ତେ ।"

ସେ କେବଳ ବୈଜ୍ଞାନିକ ନ ଥିଲେ । ତାଙ୍କର କର୍ମଜୀବନ ମଧ୍ୟରେ ବିଜ୍ଞାନ, ସାହିତ୍ୟ, ମାନବପ୍ରେମ ଓ ସ୍ୱଦେଶପ୍ରେମର ଯେଉଁ ସମ୍ମିଳନ ହୋଇଥିଲା; ଆଧୁନିକ ଜଗତରେ ସେପରି ଦୃଷ୍ଟାନ୍ତ ବିରଳ । କେବଳ ବୈଜ୍ଞାନିକ କହିଲେ ତାଙ୍କୁ ଉପଯୁକ୍ତ ମର୍ଯ୍ୟାଦା ଦେବା ସମ୍ଭବ ହେବ ନାହିଁ । ସେ ଥିଲେ ଅଖଣ୍ଡ ଶକ୍ତିର ଉତ୍ସ ।

'ଭାଗୀରଥୀର ଉତ୍ସ ସନ୍ଧାନେ' ନାମକ ପ୍ରବନ୍ଧରେ ବୈଜ୍ଞାନିକ ଜଗଦୀଶ ଲେଖିଛନ୍ତି—"ନଦୀର ସେହି କ୍ଷୁଦ୍ର କ୍ଷୁଦ୍ର ଧ୍ୱନି ଭିତରେ କେତେ କଥା ଶୁଣିବାକୁ ପାଇଲି । ନଦୀକୁ ଜିଜ୍ଞାସା କଲି, ତୁମେ କେଉଁଠାରୁ ଆସୁଅଛ ? ନଦୀ ଉତ୍ତର ଦେଲା, 'ମହାଦେବଙ୍କର ଜଟା ଭିତରୁ ।'...ମୃତ୍ୟୁରେ କ'ଣ ଜୀବନର ପରିସମାପ୍ତି ? ଯେ ଯାଏ, ସେ କେଉଁଠାକୁ ଯାଏ ? ନଦୀର କଳଧ୍ୱନି ମଧ୍ୟରେ ଶୁଣିବାକୁ ପାଏ— 'ମହାଦେବଙ୍କର ପଦତଳକୁ !'...ଆମ୍ଭେମାନେ ଯେଉଁଠାରୁ ଆସୁ ପୁଣି ସେହି ସ୍ଥାନକୁ ଫେରିଯାଉ । ଦୀର୍ଘ ଦିନ ବିଦେଶରେ ରହିବା

ଘରେ ଈଶ୍ୱର ସମ୍ମତ ମିଳନ ହେବାପାଇଁ ଫେରିଯାଉ ।" କ ସୁନ୍ଦର ରଚନା ! ଭାବ ପ୍ରକାଶ ମଧ୍ୟ ଅପୂର୍ବ ।

ଜଗଦୀଶ ଅମର । ତାଙ୍କର ଆତ୍ମା ମଧ୍ୟ ଅମରଧାମରେ ବିରାଜିତ । ଜଗଦୀଶ ଜଗଦୀଶଙ୍କ ଚରଣରେ ଆଶ୍ରୟ ନେଇଛନ୍ତି । ଈଶ୍ୱର ଜଗଦୀଶଙ୍କ କଲ୍ୟାଣରୁ ଭାରତରେ ଅନେକ ଜଗଦୀଶ ଜନ୍ମଲାଭ କରନ୍ତୁ । ଭାରତର ଗୌରବ ବୃଦ୍ଧି ହେଉ, ଏହା ସେହି ମଙ୍ଗଳମୟଙ୍କ ନିକଟରେ ପ୍ରାର୍ଥନା ।

